ଲେଖକ—

ଶ୍ରୀ ଦଶରଥ ସାମଲ

ପ୍ରକାଶକ—

ଶ୍ରୀ ପ୍ରକାଶନୀ

ଓଡ଼ିଆ ବଜାର, କଟକ—୧

ମୁଦ୍ରାଙ୍କନ—

ଶ୍ରୀ ଶ୍ରୀନାଥ ଚାଟର୍ଜୀ

ମୁଦ୍ରଣ—

ଶ୍ରୀ ମହେଶ୍ୱର ମିଶ୍ର

ଗଣପ୍ରକାଶନୀ ପ୍ରେସ୍, କଟକ-୧

ପରିବେଷକ—

ଆଧୁନିକ ପ୍ରକାଶନୀ—

୬୦ ଲିଙ୍କ ରୋଡ଼, କଟକ-୧—

ଅଗ୍ରପ୍ରକାଶ—

ବସନ୍ତ ପଞ୍ଚମୀ—୧୯୫୯

ସଂଖ୍ୟା—

ଏକ ହଜାର

ମୂଲ୍ୟ—

ଏକ ଟଙ୍କା ୨୫ ନୂଆ ପଇସା

ଶେଫାଳୀ ।

ଷୋଳ ସତର ବର୍ଷ ବୟସର ଝିଅଟିଏ । ହାଇସ୍କୁଲରେ ତିନୋଟି ଶ୍ରେଣୀ ପାଠ ପଢି, ପଢ଼ା ବନ୍ଦ କରିଛନ୍ତି । ଘରେ ରହି ଖାଲି ବହି ପଢୁଛନ୍ତି । କବିତା ଲେଖୁଛନ୍ତି । ପତ୍ର ପତ୍ରିକାକୁ ପ୍ରକାଶ ପାଇଁ ପଠାଉଛନ୍ତି ।

ମଫସଲ ଗାଁ । ବହି ପଢିବାକୁ ତାକୁ ପ୍ରଚୁର ମିଳେନି । ସହରକୁ କେହି ଯେବେ କେବେ ଆସନ୍ତି, ତାଙ୍କର ହାତରେ ସେ ବହି କିଣିବାକୁ ବରାଦ କରେ । ଉପନ୍ୟାସ, ଗଳ୍ପ ଆଉ କବିତା ବହି ଆସେ । ସେ ପଢ଼େ । ମଫସଲ ଜୀବନର ଅଳସ ଦିନଗୁଡ଼ିକ ତା'ର ଏଇମିତି କଟେ ।

ଦିନ ଯାଏ.........

ଶେଫାଳୀ, ପ୍ରଥମେ ଛୋଟ ପିଲାଟିଏ ହୋଇଥିଲା । ବେଣୀ ଛଡ଼ ଫ୍ରକ୍ ପିନ୍ଧି ଗାଁର ବାଳିକା ସ୍କୁଲରେ ପଢୁଥିଲା । ବାଳିକା ସ୍କୁଲର

ପଢ଼ା ଛାଡ଼ ସେଠି ମାଇନର ବ ପଢିଲା । ମାଇନର ପରେ ମାଟ୍ରିକ । ମାଟ୍ରିକୁଲେସନ ଶ୍ରେଣୀର ତଳେ।ଟି ଶ୍ରେଣୀ ପଢି ସାରିଲା ପରେ, ବାପା ତା'ର ପଢ଼ା ବନ୍ଦ କରିଦେଲେ । ସେଇଦିନ ଠାରୁ ସେ ରହିଲା ଘରେ ।

ପିଲାଦିନେ ଫ୍ରକ୍ ପିନ୍ଧି ଗାଁ ସଡ଼କରେ ବେଣୀ ଛାଡ଼ି ସେ ଯାଉଥିଲା । ଅନେକ ବାଳିକା ସାଙ୍ଗ ତା'ର ଥିଲେ । ସେଇ ସାଙ୍ଗମାନଙ୍କ ଭିତରୁ ଲତା, ସୁମତୀ, ମୈଥିଳୀ—ଏଇମାନେ ତା'ର ଥିଲେ ବେଶୀ ସାଙ୍ଗ, ସ୍କୁଲକୁ ଗଲାବେଳେ ନିଜେ ନିଜେ ସବୁ ଡ଼କାଡ଼କି ହୋଇ ଯାଉଥିଲେ ।

ଲତା, ସୁମତୀ, ମୈଥିଳୀ ଆଉ ଶେଫାଳୀ ଭିତରୁ ସେଇ ଥିଲା ଟିକିଏ ସୁନ୍ଦରୀ । ଲତା ସାବନା; ସୁମତୀର ଟିକିଏ ବଡ଼ ମୁହଁ । ମୈଥିଳୀ ଥିଲା ଟିକେ ଦାନ୍ତୀ । ଶେଫାଳୀ ଶ୍ରେଣୀରେ ଭଲ ପଢ଼େ । ଏମାନେ ତା'ଠାରୁ ପରୀକ୍ଷାରେ କମ୍ ନମ୍ବର ବି ରଖନ୍ତି । ତେଣୁ ଏମାନେ ଶେଫାଳୀ ପ୍ରତି ଅସନ୍ତୁଷ୍ଟ ହୁଅନ୍ତି ।

ଉଏ ବାଳିକା ବିଦ୍ୟାଳୟର କଥା·····

ଏଇ ଗ୍ରାମଗଣଯାକ ଆସି ଏକା ସାଙ୍ଗରେ ପୁଣି ହାଇସ୍କୁଲରେ ପଢିଲେ । ସେତେବେଳକୁ ସମସ୍ତଙ୍କୁ ପ୍ରାୟ ଏଗାର କି ବାର ବୟସ ହୋଇ ଯାଇଥିଲା ।

ସେତେବେଳେ ସମସ୍ତେ ଦେଖିଲେ, ଶେଫାଳୀ ସାଙ୍ଗରେ ବନ୍ଧୁ ଛାତ୍ର କଥାବାର୍ତ୍ତା କରୁଛନ୍ତି । ଉପରେ ପଢ଼ୁ ବି କଥାର ଖିଅ କାଢୁଛନ୍ତି । ଦିନେ ସେ ଅନୁପସ୍ଥିତ ରହିଲେ, ତା'ର କାରଣ ବି ପଚାରି ବସନ୍ତି । କିନ୍ତୁ ସେମାନଙ୍କୁ କାହିଁକି କେହି ପଚାରନ୍ତି ନାହିଁ ।

ସେମାନେ ତେର ଚଉଦରେ ଆସି ପହଞ୍ଚିଲେ । ଆଖିରେ, ଦେହରେ ଲାବଣ୍ୟ ଉଛୁଳିଲା । କଥାରେ, ଚାଲିରେ କଳା ଫୁଟିଲା । ଶେଫାଳୀ ଆଉ ଏ ସମସ୍ତେ ପାଦ ଟିପି ଟିପି ଚାଲିଲେ । ଅଳପ ଅଳପ କଥାବାର୍ତ୍ତା କଲେ । ଆପଣାକୁ ସୁନ୍ଦର କରିବା ପାଇଁ ସାଧ୍ୟ ମତେ ଚେଷ୍ଟା କଲେ ।

ଦଶମ ଶ୍ରେଣୀରୁ ପଢ଼ା ବନ୍ଦ ରହିଲା ସେଫାଳୀର ।

କିନ୍ତୁ ଲତା, ସୁମତି ଆଉ ମୈଥିଳୀ ବେଶୀ ବେଶୀ ପଢ଼ିଲେ । ମାଟ୍ରିକ, ଆଇ:ଏ: । ସେ କିନ୍ତୁ ରହିଲା ସେଇଦିନୁ ଘରେ ।

ଶେଫାଳି ସକାଳୁ ଉଠେ । ଆଖି ଧୋଇ ବାହାରକୁ ଚାହେଁ । ଦେଖେ, ସକାଳ ଆସିଯାଇଛି । ପୂର୍ବ ଆକାଶ ନାଲି ପଡ଼ି ଆସୁଛି । ଗାଁର ବହୁ ଲୋକେ ଏପର୍ଯ୍ୟନ୍ତ ବି ଉଠି ନାହାନ୍ତି- ସକାଳର ସେଇ ଶାନ୍ତ ପରିବେଶ ଭିତରେ ଶେଫାଳି ଚାହେଁ ଆପଣାକୁ, ଆପଣାର ଦେହ ଆଉ ମୁହଁକୁ । ମନ ଭିତରେ ତା'ର କେତେ ଆଶାର କୁଆର ଆସେ । ଖରା ମାଡ଼ି ଆସେ । ସେଇ କୁଆରିଆ ଭାବନା ତା'ର ବନ୍ଦ ହୁଏ ।

ଖରାବେଳେ ସେ ବହି ପଢ଼େ । ଠିକ୍ ପରି ବହି ଭିତରେ ସେ ଲାଗିଯାଏ । ଖରାବେଳ ଯାଏ । ସଂଧ୍ୟା ଆସେ । ଖରାବେଳେ ପଢ଼ିଥିବା ବହିଗୁଡ଼ିକର ଘଟଣା ମନ ଭିତରେ ତା'ର ଘୁରେଇ ବୁଲେଇ ହୁଏ ।

ସଂଧ୍ୟାର ଆକାଶକୁ ଚାହେଁ । ଅଳ୍ପ କେଇଟି ତାରା ବଡ଼ ଉଜ୍ଜ୍ୱଳ ହୋଇ ଆକାଶର ଛାତିରେ ଦିଶନ୍ତି । କାହିଁ କେଉଁଠି ଅଂଧାର ତାଙ୍କ ଗାଗେ ହାତ ଦେଇ ମାଡ଼ି ଆସେ ।

ସେଇ ଅନ୍ଧାର ଭିତରେ ସେଇ କେଇଟି ତାରାକୁ ସେ ଗୃହେଁ । ମନ ସତେ ଅବା ତା'ର ଉଦାସ ହୋଇ ଉଠେ । ଘରକୁ ଫେରେ । ଉଦାସ ମନକୁ ନେଇ ଘରକାମରେ ତା' ନିଜର ମା'କୁ ସାହାଯ୍ୟ କରେ ।

ଚନ୍ଦ୍ରମସ ରାତରେ, ଜହ୍ନ ଚକ୍‌ଚକ୍‌ ହୁଏ । ସେଇ ଜହ୍ନକୁ ବ ସେ ଗୃହେଁ । ସେଇ ଗୋଲା ଜହ୍ନକୁ ବାର ବାର ଆଖି ମେଲି ଗୃହେଁ । ଘର ଭିତରର ଝରକା ଦେଇ ଗୃହେଁ । ପୁଣି ସେଠୁ ଫେରି ଆସେ । ଦାଣ୍ଡରେ ଦେଖେ ଜହ୍ନକୁ ଅତି ପରିଷ୍କାର ଭାବେ ।

ପୁଣି କେଉଁ ଦିନ ମେଘ ଘୋଟି ଆସେ । ସବୁ ଯେମିତି ଅନ୍ଧାର ଦିଶେ । ପବନ ପିଟେ । ଝୁ ଝୁ ହୋଇ ବର୍ଷା ପଡ଼େ । ବିଜୁଳୀ ମାରେ । ଘର ଭିତରେ ଚୁପ୍ ଶୋଇରହି କାନ ଭିତରେ ହାତ ଦିଏ । ଭାରି ଭଲ ଲାଗେ ବର୍ଷା ତାକୁ କନ୍ତୁ ।

ଶେଫାଳି ଆକାଶର ତାରାକୁ ଭଲ ପାଉଛି । ଶୁକ୍ଳ ତଥିର ଜହ୍ନକୁ ଅନାଉଛି । ମେଘ ଅନ୍ଧାର ରାତି ବ ତାକୁ ଭଲ ଲାଗୁଛି ।

କାହିଁକି ଭଲ ଲାଗୁଛି ତାକୁ ? ତା'ର ଭିତରେ କଣ ପାଏ ସେ କେଜାଣି ? ବର୍ଷା, ଜହ୍ନ, ସନ୍ଧ୍ୟା, ସକାଳ ଆଉ ମିଠି ମିଠି ତାରା ଭିତରୁ କି ଆମୋଦ ପାଏ ସେ ? ଜାଣି ହୁଏନା । ନିଜେ ନିଜେ ସେ ଏସବୁ ଉପଭୋଗ କରେ । କେତେବେଳେ ମନର ହରିଣୀ ତା'ର କାନ୍ଦେ । କେତେବେଳେ ଅବା କୁଦି କୁଦି ଫେରି ଆସେ ପୁଣି ଆପଣା ଜାଗାକୁ ।

ଶେଫାଳୀର ଦିନ ଯାଏ ।

ସୁରେନ୍ଦ୍ର ।

ସେଇ ଗାଆଁରେ ତା'ର ଘର । କଲେଜରେ ବି: ଏ: ଶ୍ରେଣୀରେ ପଢେ ।

ଗାଆଁରେ ଭାରି ପ୍ରଶଂସା ସୁରେନ୍ଦ୍ରର । ତାଙ୍କ ଗାଁରେ କେତେ ଗଠନମୂଳକ କାମ ସେ କରେ । ଛୁଟିରେ ଘରକୁ ଆସିଲେ ଗାଁର ଉନ୍ନତି ପାଇଁ କେତେ ସଭା ସମିତି ସେ ଡାକେ । ପାଠାଗାରର ବାର୍ଷିକ ସମ୍ମିଳନୀ ପାଇଁ କେତେଆଡୁ କେତେ ଲୋକ ଆଣି ଗାଁରେ ପହଞ୍ଚାଇ ଦିଏ । ବନ୍ୟା ବେଳେ ସଡକ ଭାଙ୍ଗି ଯାଇଥିଲେ, ଗାଁ ଟୋକାଙ୍କୁ ଆଣି, ବନ୍ଧ ବାନ୍ଧେ । ବୁଢ଼ା ବୁଢୀ ଲୋକଙ୍କୁ ଡାକି ଆଣି ପାଖରେ ବସାଏ । ଦେଶ ବିଦେଶ ଖବର ସେ କହି ଗୁଲେ ।

ତେଣୁ ସେ ଗାଁରେ ସୁରେନ୍ଦ୍ର ଥିଲା ସମସ୍ତଙ୍କର ଆଦରର ପାତ୍ର ।

ଏଇ ସୁରେନ୍ଦ୍ର—ସେତେବେଳେ ହାଇସ୍କୁଲର ଥିଲା ଏକାଦଶ ଶ୍ରେଣୀର ଛାତ୍ର । ସେଇଠି ପଢୁଥିଲା ବେଳେ ଡ଼ିବେଟିଂ ସୋସାଇଟିରେ ସେ କେତେ ଯୁକ୍ତିମୂଳକ ବକ୍ତୃତା ଦେଉଥିଲା । ସେଇଦିନୁ ତା' ଜୀବନର ସବୁ ବିକାଶ ଯେମିତି ଜଣା ପଡୁଥିଲା ।

ଶେଫାଳୀ ଥିଲା ସେତେବେଳେ ଅଷ୍ଟମ ଶ୍ରେଣୀର ଛାତ୍ରୀ ।

ଯେତେବେଳେ ଏଇସବୁ ଡ଼ିବେଟ ପ୍ରଭୃତିର ଆୟୋଜନ କରାଯାଏ, ଶେଫାଳୀ ବି ଅଂଶ ନେଉଥିଲା ସେଥିରେ । ସେଇ

ହାଇସ୍କୁଲରେ ଆଉ ଗୋଟିଏ ସାହିତ୍ୟ ସଂସଦ ନା ଏମିତ କ'ଣ ଗୋଟିଏ ଥିଲା । ପ୍ରତି ଶନିବାର ଦିନ ଶେଫାଳୀ ତା' ଲେଖା ନେଇ ସେଠି ପଢ଼ୁଥିଲା । ସମସ୍ତେ ତାକୁ ଉଚ୍ଛ୍ୱସିତ ପ୍ରଶଂସା କରୁଥିଲେ । ଏମିତ ଏମିତି ସୁରେନ୍ଦ୍ର ଆଉ ଶେଫାଳୀର ହାଇସ୍କୁଲ ଜୀବନ ଗୁଳି-ଥିଲା ।

ସୁରେନ୍ଦ୍ର ମାଟ୍ରିକ୍ ପଢ଼ିସାରିଲା ପରେ କଲେଜରେ ପଢ଼ିଲା ।

ଶେଫାଳୀର ଦାଶମ ଶ୍ରେଣୀରୁ ପଢା ରହିଲା ।

ସେଇ ହାଇସ୍କୁଲରେ ପଢୁଥିଲା ବେଳେ ଏଇ ଶେଫାଳୀ ତା'ର ମନ ଭିତରେ ଭଲ ପାଇ ବସିଥିଲା ସୁରେନ୍ଦ୍ରକୁ । ଆଉ ସୁରେନ୍ଦ୍ର ବି ଶେଫାଳୀକୁ ଭଲ ପାଇଥିଲା ।

କଲେଜରେ ପଢୁଥିଲା ବେଳେ ସୁରେନ୍ଦ୍ର ଘରକୁ ଆସେ । ସୁରେନ୍ଦ୍ର ଆଉ ଶେଫାଳୀ କେତେ କଥାବାର୍ତ୍ତା ହୁଅନ୍ତି ।

ସୁରେନ୍ଦ୍ର କହେ—'ଶେଫାଳୀ, ତୋ କବିତା ମୁଁ ଅମୁକ ପତ୍ରିକାରୁ ପଢ଼ିଥିଲି । ଭାରି ଭଲ ଲାଗିଲା । ମୋ ସାଙ୍ଗ ସାଥିଙ୍କୁ ପଢ଼ାଇଲି, ସମସ୍ତେ ଭଲ କହିଲେ ।'

ଶେଫାଳୀ ହସେ, ନିଜ କବିତାର ପ୍ରଶଂସାରେ ଗୁଡିଏ ତା'ର ଫୁଲି ଉଠେ । ତା' କବିତା, କଲେଜର ସୁରଭାଇ ସାଙ୍ଗମାନଙ୍କ ଭିତରେ ପଢ଼ା ଯାଇଛନ୍ତି ବୋଲି ଭାବି, ନାକ ଅଗ ତା'ର ଗର୍ବରେ ଫୁଲି ଉଠେ ।

ସୁରେନ୍ଦ୍ର ଆଉ ଶେଫାଳୀ—ସେଇ ଗାଆଁର ସତେ ଯେପରି ମଣି-କାଞ୍ଚନ ।

ସୁରେନ୍ଦ୍ର ଗାଁର ଉନ୍ନତିମୂଳକ କାମ ପାଇଁ ଚେଷ୍ଟା କରେ । ଶେଫାଳୀ ତା' ସହ ବି ଅଂଶ ଗ୍ରହଣ କରେ । ତେଣୁ ଶେଫାଳୀ ବି ଥିଲା ସୁରେନ୍ଦ୍ର ସହ ପ୍ରଶଂସାର ପାତ୍ରୀ । ଏଇମିତି ସୁରେନ୍ଦ୍ର ଆଉ ଶେଫାଳୀର ସମ୍ପର୍କ ଦିନକୁ ଦିନ ଘନିଷ୍ଠ ହେଉଛି ।

ଶେଫାଳୀ ଘରୁ ଥାଇ ଚିଠି ଲେଖେ ସୁରେନ୍ଦ୍ର ପାଖକୁ—"ମୋ ପାଇଁ ଅମୁକ ବହି ଆଣିବ ସୁରଭାଇ । ନୂଆ ହୋଇ ପ୍ରକାଶିତ ହୋଇ-ଥିବା "ବଧୂବରଣ" ଉପନ୍ୟାସ ପଠାଇବ । ଗାଁକୁ କେବେ ଆସିବ ? ତମ ଚିଠି ଅପେକ୍ଷାରେ ରହିଲି ।"

ସୁରେନ୍ଦ୍ର ଲେଖେ—'ଡାକରେ ତୋ ବରାଦ ବହି ପଠାଇଲି । ଡେରି ହୋଇଗଲା ବୋଲି ମନରେ କିଛି ଭାବିବୁନି । ମନେ ରଖିଥିବୁ । ଘରକୁ କେବେ ଯିବି, ପରେ ଲେଖିବି । ଆଜି ଆ—'

ଥରେ । କୁମାର ପୂର୍ଣ୍ଣିମା ହେବାକୁ ଆଉ ଦୁଇ ଦିନ ଅଛି । ସୁରେନ୍ଦ୍ର ପୂଜା ଛୁଟିରେ ଘରକୁ ଆସିଛି ।

ଗୋଟିଏ ସନ୍ଧ୍ୟା । ସୁରେନ୍ଦ୍ର ଆଉ ଶେଫାଳୀ ମହାଦେବ ମଣ୍ଡପରେ ବସିଛନ୍ତି । ମଣ୍ଡପର ଆଗକୁ ବଡ଼ ପୋଖରୀ । ଅସୁମାରି କଇଁଫୁଲର କଡ଼ ମୁଣ୍ଡ ଟେକିଛି ।

ଆକାଶ ଗୋଛରେ ଜହ୍ନ । ନୀଳ, ଡେଉ ଖେଳୁଥିବା ଆକାଶ । ପାଖରେ କେହି ନାହାନ୍ତି । ପ୍ରଥମେ ସୁରେନ୍ଦ୍ର କହିଲା—'ଶେଫି ! କଲେଜରେ ପାଠ ପଢୁଥିଲା ବେଳେ ତୋ କଥା ମୋର ଭାରି ମନେ ପଡ଼େ । ଦିନେ ଦିନେ ଏଇମିତ ଜହ୍ନ ପଡ଼ରେ, ହଷ୍ଟେଲର ଝରକା ଖୋଲି ମୁଁ ଏଇ ଜହ୍ନକୁ ଚାହେଁ । ବନ୍ଧୁଗୁଡ଼ାକ ଖୋଲି ହୋଇ

ଟେବୁଲ୍ ଉପରେ ପଡ଼ିଥାଏ । ସରଗର ସେଇ ଚନ୍ଦ୍ରକୁ ମୁଁ ନିରୀକ୍ଷଣ କରି ଚାହେଁ, ଦେଖେଁ, ଅନୁଭବ କରେଁ । ସେଇ ଚନ୍ଦ୍ର ଭିତରେ ଯେମିତି ତୋ ମୁହଁ ଲୁଚି ଲୁଚି ମୋ ସହ ଲୁଚକାଳି ଖେଳେ । ଆଉ ଦିନେ ଦିନେ କଲେଜ ହଷ୍ଟେଲ ଛାଡ଼ି, କଲେଜ ପଡ଼ିଆକୁ ଏକାକୀ ପଳାଇ ଆସେ । କଲେଜ ପଡ଼ିଆର ସେଇ ଘାସ ଗାଲିଚା ଉପରେ ମୁଁ ମୋ ହାତଏଲ୍ ପାରି ଶୋଇପଡ଼େ । ପୁଣି ଦେଖେ ସେଇ ଚନ୍ଦ୍ର—ସେଇ ମୁହଁ । ଆମ ଭଲ ପାଇବା ଏଇ ଶରତ୍ ଆକାଶର ଚନ୍ଦ୍ରପରି ଶୁଭ୍ର ହେଉ, ସଫେଦ୍ ହେଉ ।'

ଶେଫାଳୀ କହେ—'ଶୁଣିବ ସୁର ଭାଇ ; ଠିକ୍ ତମରି ପରି ମୁଁ ବି ଅନୁଭବ କରେଁ । ସଂଧ୍ୟା ବେଳେ ଆକାଶର ତାରାକୁ ମୁଁ ଚାହେଁ । ରାତିର ଅନ୍ଧାରରେ, ମୁହଁକୁ ମୁହଁ ଯେଉଁଠି ଦେଖା ହୁଏନି, ସେଇ ଅନ୍ଧକାର ଭିତରେ ତମରି ମୁହଁ ଜୁଳୁ ଜୁଳୁ ହୋଇ ମୋତେ ଦିଶେ, ଆଉ ଜହ୍ନ ପକ୍ଷର ରାତି—ଆଃ ମୁଁ ଆଉ କହି ପାରିବିନି ସୁର ଭାଇ ।'

ଶେଫାଳୀ ଘୁଞ୍ଚି ଆସେ ସୁରେନ୍ଦ୍ର ପାଖକୁ । ସୁରେନ୍ଦ୍ର ତା'ମୁଣ୍ଡ ଖେଳି ଆଉଁସି ଦିଏ । ସ୍ନେହ, ମମତା ଅଜାଡ଼ି ଦିଏ ।

ଆଉ ଦିନେ । କୁମାର ପୂର୍ଣ୍ଣିମାର ପରଦିନ ରାତି । ଆକାଶରେ ଗଢ଼ ମାରି ଜହ୍ନ ଆସିଛି । ମହାଦେବ ପୋଖରୀର ଅଳୁମାଳୀ କଇଁକଢ଼ ଏପଟ ସେପଟ ହେଉଛି । କୁଆଁରୀ ପୁନେଇଁର ଉତ୍ସବ ପାଇଁ ଗାଁ ଝିଅ ଫୁଲ ଆଉ ଦଠକୁ ଛୁଞ୍ଚେଇ ମିଞ୍ଚେଇ ଅଡୁଆ କରିଛନ୍ତି ।

ସେଇ ମଣ୍ଡପରେ ପୁଣି ବସି ଛନ୍ତି ସୁରେନ୍ଦ୍ର ଓ ଶେଫାଳୀ ।

ଶେଫାଳୀ କହିଲା—'କେତେଦିନ ଏଇମିତି, ଏଇ ଭଲ ପାଇବାର ବନ୍ଧନରେ ଆମେ ବାନ୍ଧି ହୋଇଥିବା ? ଭବିଷ୍ୟତ ପାଇଁ ତମେ କ'ଣ କିଛି ଭାବୁନା ? ଦିନେ ହେଲେ ତ ତମେ ଭବିଷ୍ୟତ

କଥା ମୋ ଆଗରେ କହୁନା ? ଦୂର ହେଲେବି ସୁନ୍ଦର ବୋଲି କହି କହି ମତେ ଭଣ୍ଡୁନା ତ ସୁରଭାଇ ?'

ସୁରେନ୍ଦ୍ର କହେ—'ଶେଫି, ଭବିଷ୍ୟତ ପାଇଁ କିଛି ମୁଁ ଏବେ ଭାବିନି; ଭାବିବାର ବି କିଛି କାରଣ ନାହିଁ । ଏଇ ସ୍ନେହ, ଏଇ ମମତାକୁ ଆମେ ଜୀବନ ଭରି ଆମ ଭିତରେ ସାଇତି ରଖିଲେ ତ ହେଲା !'

ଶେଫାଳୀ କହେ—'କେମିତି ସାଇତି ରଖିବା ? ବାହା ହୋଇ ନାହାନ୍ତି ବୋଲି ସିନା ଆମେ ଏକାଠି ବୁଲୁଛନ୍ତି, ବସୁଛନ୍ତି, ମନ ଇଚ୍ଛା ଗପୁଛନ୍ତି, ମନ ଭିତରର ସ୍ନେହ ଉଜୁଡ଼ାଉଜୁଡ଼ ହେଉଛନ୍ତି । ଆମ ଗାଁ ଲୋକଙ୍କର ଆମ ଉପରେ ଅଟଳ ବିଶ୍ୱାସ ଅଛି ବୋଲି ସିନା ଆମେ ନଦୀକୂଳରେ ବସି ଏତେ କଥା ଗପି ପାରୁଛନ୍ତି । କିନ୍ତୁ କାଲି ଯେତେବେଳେ ଏଇ ବୟସର ସୁଅ ବଢି ଚାଲିବ, ସେତେବେଳେ ମୋ ପାଇଁ ଖୋଜାଯିବ ପାତ୍ର । ଆଉ ତମ ପାଇଁ ଲୋଡ଼ା ହେବ ପାତ୍ରୀଟିଏ । ସେତେବେଳ ପାଇଁ କିଛି ବାଟ ପରିଷ୍କାର କରୁଛ ନା ନାହିଁ ?'—

ସୁରେନ୍ଦ୍ର କହେ—'ବୁଝିଲି ଶେଫି, ତୁ ଗୋଟେ ଆଜ ଏମିତି ପ୍ରସ୍ତାବ ଆଣିଛୁ, ଯାହାର ମାନେ ଆମର ବିବାହ ପ୍ରସ୍ତାବ । ବିବାହ ନ କରି ଜୀବନଭରି ଆମେ କ'ଣ ଏଇ ସ୍ନେହ ଆଉ ମମତା ବାଆନ୍ତ କରିପାରିବା ନି ? ସବୁ କରି ପାରିବା । ବିବାହର ଖୋଳପା ପିନ୍ଧି ଆମେ ସ୍ୱାମୀ ଆଉ ସ୍ତ୍ରୀ ନାଆଁରେ ଦୁନିଆଁରେ କାହିଁକି ଜଣାପଡ଼ିବା ? ଏଇ ସ୍ନେହ, ଏଇ ମମତା ନେଇ ଆମେ ରହୁଥିବା ଜଣେ ଜଣକଠାରୁ ଠିକିଏ ଦୂରରେ । ସେଇ 'ଠିକିଏ ଦୂରତ୍ୱ'ର ବ୍ୟବଧାନ ଆମ ଭଲ ପାଇବାର ବନ୍ୟାରେ କେମିତି ପୂର୍ଣ୍ଣ ହୋଇ ଯାଉଥିବ । ସେଇ ସ୍ନେହ ଆଉ ମମତାକୁ ସମ୍ବଳ କରି ଆମେ କ'ଣ ବଞ୍ଚି ପାରିବାନି ଦୁନିଆରେ ?'

ଶେଫି କହେ, 'ସବୁ ବୁଝିଲି । କିନ୍ତୁ ବାପା ବୋଉ ଯେତେବେଳେ ଆମର ବାହାଘର ପ୍ରସ୍ତାବ ପକାଇ ପାତ୍ର-ପାତ୍ରୀ ନିର୍ବାଚନ କରିବେ, ଆଉ ଜବାବ ପାଞ୍ଚ ସାତ ବର୍ଷ ଯାଏ ବଡ଼ ବାହାଘର ଆୟୋଜନ କରିବେ, ସେତେବେଳେ ଆମେ କ'ଣ କରିବା ?'

ସୁରେନ୍ଦ୍ର କହେ—'ବ୍ୟସ୍ତ ହେଉଛୁ କାହିଁକି ଶେଫି, ବେଳ ଯେତେବେଳେ ଆସିବ, ତା'ର ବ୍ୟବସ୍ଥା ଆମେ କରିବା । ଆଜିନୁ ଏମିତି ହେଲେ କ'ଣ ଚଳିବ ?'

ଦୁହେଁ ଗପ ମେଲନ୍ତି । ଗପ ସରିଲେ ଆପଣାର ଘରକୁ ଫେରି ଆସନ୍ତି ।

ଅଂଜଳୀ—ବୟସ ଷୋଳ କି ସତର ଭିତରେ । କଲ୍ୟାଣପୁର ଗାଁରେ ତା'ର ଘର ।

ଅଷ୍ଟମ ଶ୍ରେଣୀରୁ ପଢ଼ା ବନ୍ଦ କରି ଏବେ ଘରେ ରହୁଛି । ନିମ୍ନ-ପ୍ରାଥମିକ ବାଳିକା ବିଦ୍ୟାଳୟରେ ସେ ଶିକ୍ଷୟିତ୍ରୀ ହୋଇଛି ।

ଅଂଜଳୀ—ଅଳ୍ପ ଡେଙ୍ଗୀ, ପାତଳୀ, ଟଣା ଟଣା ଭୂରୁ; କାନ ଯାଏଁ ଲମ୍ବିଛି । ଗୌର ବର୍ଣ୍ଣ । କଥା କହିଲା ବେଳେ ମୋଟା ମୋଟା ଦୁ'ଫାଳ ଓଠରେ ହସ ତା'ର ଗଜୁରି ଉଠେ ।

ଘରେ ତା'ର ବୁଢ଼ୀ ମା'—ବାପା ନାହିଁ, ଆଉ କେହି ନାହାନ୍ତି । ଶିକ୍ଷୟିତ୍ରୀ ହୋଇ ଯାହା ଦି'ପଇସା ପାଏ, ମାଆକୁ ଦିଏ । ଘରେ ଜମି ଅଛି । ସୁଖରେ ମା' ଆଉ ଝିଅ ଚଳନ୍ତି—

ସେଇ ଗାଁରେ ଦେବେନ୍ଦ୍ରର ଘର ।

ଆଇ. ଏ. ପଢ଼ି ଭୁବନେଶ୍ୱରରେ କ'ଣ ଗୁକିରି କରେ ସେ ।

ଅଂଜଳୀ ପ୍ରତି ପିଲବେଳେ ତା'ର ଭାରି ମମତା ଥିଲା । ପିଲ ଦିନେ ସେ ଦୁହେଁ ଭାରି ସଙ୍ଗସାଥି ଥିଲେ । ପିଲ ଦିନର ବୋହୁ-ବୋହୁକା ଖେଳରେ ଦେବେନ୍ଦ୍ର ବର ସାଜେ; ସେ ନୋଆଁ ହୁଏ । ଆଉ ଅନ୍ୟ ପିଲସବୁ ବର କନ୍ୟାଙ୍କର ମୁରବି ହୁଅନ୍ତି । ବାହାଘର ସରେ । ଦାନ୍ତ ମେଲାଇ ଏଗଡିଏ କଣରେ ହେଁସ ଆଚଳା ଦେଇ ଛୋଟିଆ ଅନ୍ଧାରିଆ ଘରଟେ ତିଆରି ହୁଏ । ଗାଁ ବୋହୁ ଯେମିତି ନୂଆ ହୋଇ ଶଶୁ ଘରକୁ ଆସିଲେ ଚୁ ଚୁ କରନ୍ତି, ଅଂଜଳୀ ସେଇମିତି କରେ । ଦେବେନ୍ଦ୍ର ଘରଭିତରକୁ ପଶିଯାଏ । ସ୍ୱାମୀ-ସ୍ତ୍ରୀ ହୋଇ ଦୁହେଁ କେତେ କଥାବାର୍ତ୍ତା ହୁଅନ୍ତି ।

ସେଇ ଦିନରୁ ସେ ଦୁହିଙ୍କର ଭାରି ସଙ୍ଗ, ଭାରି ମମତା ।

ଦିନ ଗଡ଼ି ଗଡ଼ି ଗଲା । ଏମାନେ ବଢ଼ିଲେ, ମଣିଷ ହେଲେ, ପାଠ ପଢ଼ିଲେ । ପିଲାବେଳର ଚପଳତା ମନ ଭିତରୁ ତାଙ୍କର କଟି କଟି ଗଲା । ହେଲେ ପିଲାଦିନର ସେଇ ମିଛିମିଛିଆ ଖେଳ ଘରେ ସେମାନେ ଯେଉଁ ଆନ୍ତରିକତା ଦେଇ ସ୍ୱାମୀ ସ୍ତ୍ରୀ ହୋଇ ଥିଲେ, ବୟସ ବଢ଼ିଲେ ବି ସେଇ ଭାବ କେମିତି ଗୋଟେ ଦୁହିଁଙ୍କ ଭିତରେ ଜାଗି ରହିଲା । ସେଇ ଭାବ ବୋଧେ ଦୁହିଁଙ୍କୁ ଦୁଇଜଣଙ୍କ ଆଡ଼କୁ ଅଧିକ ଆକୃଷ୍ଟ କରାଇଲା ।

ବୟସ ବଢ଼ିଲା । ଦେବେନ୍ଦ୍ରର ଆଖିରେ ଅଂଜଳୀ ଆହୁରି ସୁନ୍ଦର ଦିଶିଲା । ଅଂଜଳୀ ଆଖିରେ ଦେବେନ୍ଦ୍ର ବରୁଣର ପର୍ଯ୍ୟାୟ ମେଲିଲା ।

ଏତେଶୁ ଉଭୟେ ଉଭୟଙ୍କୁ ଭଲ ପାଉଛନ୍ତି : ଛାଡ଼ି ଦେବା ନେବା ଚାଲିଛି ।

ଥରେ, ଦେବେନ୍ଦ୍ର ଆସିଛନ୍ତି ଛୁଟିରେ ଘରକୁ ।

ସଂଜ ନଇଁ ଆସିଛି । ଗାଁର ମଥାନ ଭେଦ ଧୂଆଁ ଉଠିଲାଣି । ଅଂଜଳୀ ଆଉ ଦେବେନ୍ଦ୍ର ଖରଚୁଆଁ ନଈକୂଳେ ବସିଛନ୍ତି ।

ଅଂଜଳୀ କହିଲା 'ଦେବ ଭାଇ, ମେ ତ ବାହାଘର କରିଦେବା-ପାଇଁ ବୋଉ ଆଜକାଲି ଭାରି ବ୍ୟସ୍ତ ହେଲାଣି । ମୁଁ ତାଙ୍କୁ ଯେତେ ମନା କରୁଛି, ସେ କହୁଛନ୍ତି, ନାଇଁ; ମୋ ଦାୟିତ୍ୱ ମୁଁ ତୁଟାଇ ଦେଲେ ନିଶ୍ଚିନ୍ତ ହେବ । ଝିଅ ଜନମ ତ ପରଘରକୁ । ଆଉ କେତେ ରଖିବ କାହିଁକି ? ସେତେବେଳେ ମୋର କ'ଣ ଇଚ୍ଛା ହୁଏ ଦେବଭାଇ ଜାଣ, ଇଚ୍ଛା ହୁଏ ମୋ ମନକଥା ସଫା କହିଦେବାକୁ ତା' ପାଖରେ । କିନ୍ତୁ କହି ପାରେନା । ମୋ ଉପରେ କି ଧାରଣା ନେଉଛନ୍ତି ସେ ଜାଣ ? ମୋ ଭଳି ଝିଅ ଏ ଗାଁରେ ନାହିଁ ବୋଲି ସେ ଭାରି ଗର୍ବ କରେ । ଅନ୍ୟମାନଙ୍କ ପାଖରେ କହେ । ତେଣୁ ମୁଁ ପଦେ ତା' ପାଖରେ ମୋ ମନକଥା ଖୋଲି ଦେବି, କ'ଣ ସେ ଭାବିବ ?'

ଦେବେନ୍ଦ୍ର କ୍ଷଣେ, ଅଂଜଳୀର ବାହାଘର କଥା ଶୁଣି ମନ ତା'ର ଠିକ୍ ଭାଙ୍ଗିଯାଏ । ସତେ ଅବା ମୁହୂର୍ତ୍ତରେ ତା'ର ଚଢ଼ଙ୍କ ପଡ଼େ । ଭବିଷ୍ୟତର ଅନ୍ଧକାର ଦିଶେ ।

ଅଞ୍ଜଳୀ ତା'ର ସବୁ । ପିଲାଦିନରୁ ତା' ପ୍ରତି ତାର କେତେ ସ୍ନେହ, କେତେ ମମତା । ଗ୍ରାମ୍ୟ ଜୀବନର ଜଞ୍ଜାଳ ଭିତରେ ଅଞ୍ଜଳୀ ଯେତେବେଳେ ତା'ର ମନେ ପଡ଼େ, ସବୁ ଜଞ୍ଜାଳ, ସେ ଭୁଲିଯାଏ । ଘରକୁ ଆସିଲେ, ତାକୁ ଠିକଏ ନ ଦେଖିଲେ ମନଟା ସ୍ଥିର ହୋଇ ରହେନା । ଘରକୁ ଆସିଲେ, ବସ୍ ଆଉ ଟ୍ରେନର ଗତି ଭିତରୁ ସେ ଭାବେ ତା'ରି କଥା । ସେଇ ଅଞ୍ଜଳୀର କଥା । ତେଣୁ ତା' ବାହାଘର କଥା ଶୁଣିବାକୁ ତା'ର କିପରି ଧୈର୍ଯ୍ୟ ରହିବ ?

ଦେବେନ୍ଦ୍ର କହିଲା—'ବ୍ୟସ୍ତ ହୁଅନ୍ନି ଅଂଜଳୀ, ମନ ଯାହା ଚାହୁଁଥିବ, ସେଇଆ ହେବ । ଆଉ ବିବାହ ପ୍ରସ୍ତାବ, ଯେତେ ଆସୁଛି ଆସୁନ୍ତୁ ବୋଉ ତତେ ନିଶ୍ଚୟ ପଚାରିବ । ତୁ ତା' ମତାମତ ଲୋଡ଼ିବ । ତୋ ମତ ଲୋଡ଼ା ହେଲେ, ତୁ ତ ମନା କରିବୁ । ଚିନ୍ତା କ'ଣ ?'

ଅଂଜଳୀ କହେ—'ତମକୁ ବୋଉ ଡ଼ାକିବ ; ଭଲ ମନ୍ଦ ପଚାରିବ । ସବୁ ବୁଝି ଶୁଣି ମନକୁ ତାର ଗଲେ ହୁଏତ ସେ ଜବାବ ଦେବ ।'

ଏଇମିତି ଦିନ ଯାଏ ।

ଦେବେନ୍ଦ୍ରର ବିବାହ ପ୍ରସ୍ତାବ ପଡୁଛି ।

ବାପା, ବୋଉ ତାକୁ ବିବ୍ରତ କରୁଛନ୍ତି । ଘରକୁ ଲୋକ ଆସିଲେ, କେତେ ଘରବର ଦେଖା ଆସନ୍ତି । ତାକୁ ଦେଖିବା ପାଇଁ ଡାକନ୍ତି, ଦେଖନ୍ତି, ଚେହେରାରେ ତା'ର ସନ୍ତୁଷ୍ଟ ହୁଅନ୍ତି । ଯାଣି ଯୌତୁକ ଦେବାପାଇଁ ପ୍ରତିଶ୍ରୁତି ଦିଅନ୍ତି ।

ବାପା ଡାକନ୍ତି ଦେବ, ମୁଁ ଜବାବ୍ ଦେବି । ତୁ ଯଦି କହିବୁ ବାହାଘର ପାଇଁ ଭଦ୍ରଲୋକଙ୍କୁ ଜବାବ୍ ଦେବି; ନହେଲେ ଆଉ କହିବି କାହିଁକି ?'

ଦେବେନ୍ଦ୍ର କିଛି କହେନି । ବାପଙ୍କ ପାଖରେ ସେ କିଛି କହିପାରେନା । ବୋଉ ପାଖରେ ଆସି କହେ, 'ମନା କର ବାପାଙ୍କୁ, ବାହାଘର ଏବର୍ଷ ହେବ ନାହିଁ ।'

ଏଇମିତି ଦିନ ଯାଏ ।

ଦେବେନ୍ଦ୍ରର ମନରେ ଅଂଜଳୀଙ୍କୁ ନେଇ ଝରଣା ବହେ କୁଳୁ କୁଳୁ ନାଦରେ ମନର ଝରଣା ବହି ଗ୍ଲେ । ସେଇ ସ୍ୱର ମୃଦୁ ଢେଉରେ କେତେ ଆଶା, କେତେ କଳ୍ପନା ଆଉ କେତେ ସ୍ୱପ୍ନ ଭାସି ଭାସି ଗ୍ଲେ । ସେ ପୁଲକିତ ହୁଏ । ଭବିଷ୍ୟତର ରଙ୍ଗିନ୍ ସ୍ୱପ୍ନ ମନରେ ତା'ର ଚହଲି ଉଠେ ।

ସେଥର ଛୁଟି ସରିନା । ଅଂଜଳୀର ବୋଉ ତାଙ୍କୁ ଡ଼କାଇ ପଠାଇଲେ । ସେ ଗଲା । କେତେ କଥାବାର୍ତ୍ତା ହେଲା । ସେଇ କଥାବାର୍ତ୍ତା ଭିତରେ ଅଂଜଳୀର ବୋଉ ପଗ୍ରରିଲା—'ଦେଖ, ଅଂଜଳୀ ପାଇଁ କେଉଁଠି ପାତ୍ରଟିଏ ବୁଝିଲନା ? ବାପା ନାହିଁ, ଭାଇ ନାହିଁ ତା'ର ତମେ ସବୁ ଅଛ । ଟିକିଏ ଚେଷ୍ଟା କର ।'

ଦେବେନ୍ଦ୍ର କହିଲା—'କେଉଁ କଥା କହୁଛ ମାଉସୀ ? ଅଂଜଳୀର ବାହାଘର କଥା ତ ! ତମେ ଏତେ ବ୍ୟସ୍ତ କାହିଁକି ହେଉଛ ? ସେ ତ ବୁଢ଼ୀ ହୋଇଯାଉନି । ଦେଖୁନ, ଆମରି ଗାଆଁର ତା'ଠାରୁ ଯେଉଁମାନେ ବୟସରେ ଗ୍ରରି ପାଞ୍ଚବର୍ଷ ବଡ଼, ସେମାନେ ତ ବାହା ହୋଇ ନାହାନ୍ତି । ବେଳ ଯେତେବେଳେ ଆସିବ, ଅମେ ଖୋଜିବୁନି କି ?'

ତା' ବୋଉ କହେ—'ନାଇଁ, ଅଜହୁଁ ଚେଷ୍ଟା କର । ଅସନ୍ତା ଫଗୁଣକୁ ଆଉ ଘରେ ତାଙ୍କୁ ରଖିବିନି ।

ଦେବେନ୍ଦ୍ର ଶୁଣେ । ମନ ଭିତରଟା ତା'ର ଆଉଟି ପାଉଟି ହୁଏ । ମନ ହୁଏ ତା'ର ସଫା ସଫା ତା' ବୋଉକୁ କହିବ । କହିବ—ମାଉସୀ ତମ ଅଂଜଳୀ ପାଇଁ ମୁଁ କ'ଣ ଉପଯୁକ୍ତ ବର ନୁହେଁ ? ମତେ ପାଇ ତମ ଅଂଜଳୀ କ'ଣ ସୁଖୀ ହୋଇ ପାରିବନି ? ହେଲେ ମନ କଥା ତା'ର ମନରେ ମରେ; ସେ କିଛି କହିପାରେନି ।

ଦେବେନ୍ଦ୍ର ଆଉ ଅଂଜଳୀର ବୋଉ କଥାବାର୍ତ୍ତା ହେଉଥିଲା। ବେଳେ ସେ ଦାଣ୍ଡଘରେ ରହି ସବୁ ଶୁଣେ। ଅଂଜଳୀର ମନରେ ବିବାହର ପ୍ରସ୍ତାବ ଚମକ ସୃଷ୍ଟି କରେ। ସେଇ ଉଦ୍ଦେଶ୍ୟ ମନ ପ୍ରାଣରେ ତା'ର ଯେମିତି ଏକ କୁହୁକ ଲଗାଏ।

ଦେବେନ୍ଦ୍ରର ଉତ୍ତର ସେ ଶୁଣେ। ମନେ ମନେ ଟିକିଏ ଚିଡ଼ି ଉଠେ ସେ। ଭାବେ, ଦେବ ଭାଇ କେଡ଼େ ସ୍ୱାର୍ଥପର! ବିବାହ ପ୍ରସ୍ତାବ ବୋଉ ପକାଇଲା ବେଳକୁ ସେ କହୁଛନ୍ତି ଯେ, ଅଂଜଳି କ'ଣ ବୁଢ଼ୀ ହୋଇ ଯାଉଛି!

ସେ ପୁଣି ଭାବେ—ବୋଉ କହୁଥିଲା, କେଉଁ ସୁରଜିତ୍ ବାବୁ, ବନାରସ୍‌ରେ ଇଂଜିନିୟରିଂ ପଢୁଛନ୍ତି।

ସେ ପୁଣି କହୁଥିଲା, ମନୋଜବାବୁ—ମେଡିକାଲ୍ କଲେଜରେ କୁଆଡ଼େ ପଢ଼ନ୍ତି। ପୁଣି ଦିନେ କହୁଥିଲା, କେଉଁ ସୁରେନ୍ଦ୍ରବାବୁ, କଟକରେ କେଉଁ ବିଭାଗରେ ସରକାରୀ ଚାକିରୀ କରୁଛନ୍ତି। ଅଂଜଳୀର ମନ ଘାଣ୍ଟି ଚକଟି ହୁଏ। ବୋଉ ମୁହଁରୁ ଶୁଣିଥିବା ଏଇ କେଇଟି ନାମର ରୂପ ତା' ଆଖି ଆଗରେ ଭାସି ଉଠେ। ପ୍ରତି ନାଆଁର ପଛରେ ଜଣେ ଜଣେ ତା' ଆଖି ଆଗରେ ଦେଖା ଦିଅନ୍ତି। ତା' ଭିତରୁ କିଏ, କି ଭାବରେ ତାକୁ ଦିଶେ, ସେ ଅନୁଭବ କରି ପାରେନା। ମନ ଭିତରେ କେବଳ ଯାହା ଏକ ଉଷ୍ମ ଉତ୍ତାପ ସେ ପାଏ।

ଆଉ ଦେବ ଭାଇ? ଆହା; ବିଚରା ଦେବଭାଇ! ପିଲାଦିନରୁ ତା' ସାଙ୍ଗ। ବୋଉ ମୁହଁରୁ ସେଇ ସବୁ ବାବୁଙ୍କର ନାଁ ଶୁଣିଲା ଦିନଠାରୁ ଦେବଭାଇ ଯେମିତି ଦୂରକୁ ଦୂରକୁ ଅପସରି ଯାଉଛନ୍ତି। ଆଉ ଏଇ ଅଦେଖା ଅଜଣା ବାବୁମାନେ କେତେ ରଙ୍ଗରେ, କେତେ ଢଙ୍ଗରେ, ରୂପର ପସରା ମେଲି ତା' ଆଖି ଆଗରେ ନାଚି ଯାଉଛନ୍ତି। ମନ ଭିତରେ ତା'ର ହାବୁକା ଉଠୁଛି।

ଛୁଟି ସବୁଲେ ଦେବେନ୍ଦ୍ର ତାଙ୍କ ଗୃହକୁ ଫେରିଯାଏ । ଫେରିଲାବେଳେ, ମନ ଭିତରେ କେତେ ସପନ ତା'ର ଭସାମେଘ ପରି ଭାସି ଉଠେ । ସେଇ ଭସା ମେଘ ଭିତରୁ ଅଂଜଳୀ ତାକୁ ଦେଖା ଦିଏ । ଅଂଜଳୀର ସ୍ନେହ ସ୍ମୃତି ମନକୁ ତା'ର ଉଦାସ କରେ । ସେ ଫେରିଯାଏ ।

ସୁରେନ୍ଦ୍ର ବି: ଏ: ପାଶ୍ କରି ସାରିଛନ୍ତି । ଏବେ ସରକାରଙ୍କ ବେଶ୍ ଏକ ବିଭାଗରେ ଚାକିରି କରୁଛନ୍ତି ।

ଏଇ ଚାକିରି କରିବାର ତା'ର ତିନି ମାସ ହୋଇଗଲାଣି । ପାଠ ପଢୁଥିଲା ବେଳେ ଗାଁକୁ ଆସି ଗାଁର ଉନ୍ନତିମୂଳକ କାମରେ ଯେପରି ଅଂଶ ଗ୍ରହଣ କରୁଥିଲେ, ଚାକିରି କରିବା ପରେ ସେ ଅବଶ୍ୟ ସେଥିରୁ ସଂପୂର୍ଣ୍ଣ ନିବୃତ୍ତ ହୋଇନ; ତଥାପି ଯେତେବେଳେ ଛୁଟି ନେଇ ଆସେ, ଗାଁର ଉନ୍ନତି ପାଇଁ ଚିନ୍ତା କରେ । ଗାଁ ଲୋକଙ୍କ ଉତ୍ସାହ ଦିଏ । ତେବେ ପୂର୍ବପରି ତା' ନାମ ଆଉ ଶୁଭି ପାରୁନି । ଗାଁ ସଂଗଠନ ବହୁ ଅଂଶରେ ମନ୍ଦା ପଡ଼ିଯାଇଛି ।

ପଢୁଥିଲା ବେଳେ, ଶେଫାଳୀ ପାଖକୁ ଯେପରି ଚିଠିମାନ ଲେଖୁଥିଲା, ଚାକିରି କଲା ପରେ ସେଇମିତି ବି ଲେଖୁଛନ୍ତି, ନୂଆ ନୂଆ ବହି ବାହାରିଲେ ତା' ପାଖକୁ ପଠାଉଛନ୍ତି । ଯେଉଁ ପତ୍ରିକାରେ ତା' କବିତା ବାହାରେ, ତାକୁ ପଢ଼ି ସେ ମନ୍ତବ୍ୟ ଲେଖୁଛନ୍ତି । ଦିନ ଯାଉଛି ।

ଥରେ । ସୁରେନ୍ଦ୍ର ଆସିଛନ୍ତି ଘରକୁ ସେଦିନ ହୋଇଥାଏ ଦୋଳ ପୂର୍ଣ୍ଣିମା । ସେ ତାଙ୍କ ଦାଣ୍ଡଘରେ ବସି ବହୁକ୍ଷଣରୁ କ'ଣ ପଢୁଥିଲେ ।

ଝିନ ବୋଧହୁଏ ଦଶଟା ହେବ । ବାହାରେ ଫାଗୁଣର ଅଳପ ଅଳପ ହାଙ୍ଗୁଳା ଖରା — ତା' ବୋଉ ଆସିଲା । ପାଖରେ ବସିଲା ସୁରେନ୍ଦ୍ର ବହି ଟେକି ବୋଉକୁ ଚାହିଁଲା । ପୁଣି ବହି ପଢ଼ିବାରେ ଲାଗିଲା । ତା' ବୋଉ କହିଲା--ସୁରା, କଥାଟିଏ କହିବ ମାନିବୁ ? ତୁ କାହିଁକି ଅବୁଝା ହେଉଛୁ କହିଲୁ ? ଏଇ ଗାଆଁରେ ଫି'ବରଷ କେତେ ପୁଅ ଝିଅଙ୍କର ବାହାଘର ନ ହେଉଛି ! ବାହାଘର ବେଳେ ଯେଉଁ ଢୋଲ ମହୁରୀ ଆଉ ଶଙ୍ଖ ବାଜେ, ମୁଁ ସବୁ ଶୁଣେ ମୋ ଛାତି କରତ ହୋଇଯାଏ । ତୁ କାହିଁକି ଏମିତି ହେଉଛୁ କହିଲୁ ?

ସୁରେନ୍ଦ୍ର ବହି ବନ୍ଦ କରି ତା' ବୋଉ ଆଡ଼କୁ ଚାହିଁଲା । ଦେଖିଲା, ବୋଉ ଆଖି ଲୁହରେ ଛଳ ଛଳ । କଣ୍ଠ ତା'ର ରୁନ୍ଧି । ଲୁଗା କାନିରେ ସେଇ ଲୁହକୁ ପୋଛିବାକୁ ସେ ଆରମ୍ଭ କରୁଛି । ସେ ଚାହିଁଛି ସେଇ ଆଡ଼କୁ ।

ସେ ଭାବିଲା, କେଉଁ ଦିନେ ତ ବୋଉ ତା' ପାଖକୁ ଆସି ଏମିତି କହି ନଥିଲା ? ଆଖିରୁ ଲୁହ ପୋଛି ନ ଥିଲା ? ବିବାହ ପ୍ରସ୍ତାବ ଆସିଲେ, ସେ ଅନେକ ଥର ମନା କରେ । ବୋଉ 'ପାଗଳାଟା' ବୋଲି କହେ । ଆଜି କାହିଁକି ଗାଁରେ କା'ର ବାହାଘରର ଢୋଲ ମହୁରୀର ଉଦାହରଣ ଦେଇ, କଥା କହୁଛନ୍ତି ? ଲୁହ ଗଡ଼ୁଛି ?

କହିଲା — ବୋଉ, ତୁ କାନ୍ଦୁଛୁ କାହିଁକି କହିଲୁ ? ପୁଅ ହୋଇଛି । ମୁଁ କ'ଣ ଆଉ ଅଣ୍ଡିଆ ରହିବି ! ବାହା ହେବି, ସଂସାର କରିବି । ତୁ ନାତି ନାତୁଣୀ ଦେଖିବୁ । ଖୁସି ହେବୁ । କିନ୍ତୁ ମୋର ବୟସ, ଯାଉ ଦୁଇ ବରଷ । ବାହା ହେବା ପାଇଁ କେଉଁ କଥା ତ ଅଟକି ରହିନି !

ବୋଉ ମନ ତା'ର ପୁଲକି ଉଠିଲା । ଦୁନିଆଁ ଯାକର ମା' ମନ ପୁଅର ଆଶା ଭରସାରେ ଯେମିତି ଆନନ୍ଦରେ ନାଚିଉଠେ,

ସୁରେନ୍ଦ୍ର ବୋଉର ମନ ସେଇମିତି ଫାଟି ପଡ଼ିଲା । ଦୁଇ ଆଖିରୁ ସବୁ ଲୁହକୁ ଲୁଗାକାନିରେ ପୋଛି, କହିଲା—ଦୁଇଟି ଯାଗାରୁ ପ୍ରସ୍ତାବ ଆସିଛି । ଗୋଟିଏ ଆସିଛି କଲ୍ୟାଣପୁରରୁ, ଆଉ ଗୋଟିଏ ଆସିଛି ଗୃନ୍ଦବାଜାରୁ । ତୋ ବାପା ଆଉ ମୁଁ କାଲି ତୋ ବାହାଘର ନେଇ କେତେ କଥାବାର୍ତ୍ତା ହେଲୁ । ସେ କଲ୍ୟାଣପୁରରେ ସମ୍ବନ୍ଧ କରିବାକୁ ଭାରି ଇଚ୍ଛୁକ । ଭଲ ଝିଅଟିଏ କାଳେ । ବାପ ତା'ର ନାହିଁ । ମା ଅଛି । ଖାନ୍ଦାନୀ ବୁନିଆଦି ଘର । ବହୁତ ଜମି ଅଛି । ସେଠି ଆମର ସମ୍ବନ୍ଧ ହୋଇଗଲେ, ସେଇ ସବୁ ସମ୍ପତ୍ତି-ବାଡ଼ି ତମେ ବୁଝିବ, ଶାଶୂ ଟଙ୍କେ ତୁ ତ ଭୋଗ ଦଖଲ କରିବୁ ତାକୁ ।

ସୁରେନ୍ଦ୍ର ତା' ବୋଉର କଥାଗୁଡ଼ାକ ସବୁ ଶୁଣିଲା । ଏଇ ଶୁଣୁଥିବା ଭିତରେ ମନ ଭିତରେ ନାଚି ଉଠିଲା ଶେଫାଳୀର ରୂପ, ଶେଫାଳୀର କଥା । ଶେଫାଳୀ ବହୁ ଦୂରରେ ନାହିଁ, ସେଇ ଗାଆଁରେ ତା' ଘର । ଆଉ ଅଧଘଣ୍ଟେ ପରେ ପୁଣି ସେ ଦେଖାହେବ । ମନ ଭିତରର କେତେ ମଧୁକଥା ସେ ପରଶିଦେବ । ଶେଫାଳୀ କେତେ-ଥର ଏଇ ବିବାହ ପ୍ରସ୍ତାବ ତା' ପାଖରେ ପକାଇଛି । ସେ କଥାଟାକୁ ବରାବର ହାଲୁକା ଭାବରେ ନେଇଛି । ଜମାରୁ ଗୁରୁତ୍ୱ ଦେଇନି । ଆଜି ସେ ସେଇ ବିବାହକଥା ତା' ବୋଉ ମୁହଁରୁ ଶୁଣୁଛି । ସେଥିପାଇଁ ବୋଉ ତା'ର କାନ୍ଦୁଛି ।

ଭାବିଲା, କହିଦେବ, ମୁଁ ଶେଫାଳୀ ଛଡ଼ା ଆଉ କାହାକୁ ବାହା ହେବନି ବୋଉ; ସେ ମୋ ମନ ଭିତରର ମଣିଷ ହୋଇ ରହିଛି । ତାକୁ ବୋହୂ ରୂପେ ତୁ ପାଇଲେ ଭାରି ସୁଖୀ ହେବୁ ।

ହେଲେ କହି ପାରିଲାନି । ଗାଁରେ, ଘରେ କେହି ଜାଣିନାହାନ୍ତି ଶେଫାଳୀ ଆଉ ସୁରେନ୍ଦ୍ରର ସମ୍ପର୍କ । ବୋଉ ଜାଣେନି, ବାପା ବ

ଜାଣିବେ କେମିତି ? ତେଣୁ ଆଜି ଯଦି ବୋଉ ପାଖରେ ଏତକ ସେ କହିଦେବ, ସେ ବାପାଙ୍କୁ କହିବ । ବାପା ଶୁଣିଲେ ଧାରଣା ନିଶ୍ଚୟ ଖରାପ କରିବେ । ତାଙ୍କ ଯେତେ ସ୍ନେହ, ଶ୍ରଦ୍ଧା କରୁଛନ୍ତି, ସେ ହୁଏତ ଅନ୍ୟ ଆକାର ଧାରଣ କରିବ । ନାଁ, ସେ କହିବ ନାହିଁ ।

କହିଲା — ବୋଉ, ତୁ ବ୍ୟସ୍ତ କାହିଁକି ହେଉଛୁ ? ତୋ ହାଣ୍ଡିରେ ଯିଏ ତ ଗୁଡ଼କଳ ପକାଇଥିବ, ସେ ଆସିବ । ଆଉ ଖାଲି ପ୍ରସ୍ତାବଟା ଉପରେ ଢାଣ୍ଡି ଟିକିଟି ହେଲେ, ଲାଭଟା କ'ଣ ହେବ କହିଲୁ ?

ବୋଉ ଫେରିଗଲା ଘର ଭିତରକୁ । ମନ ଭିତରେ ତା'ର ଅଶ୍ୱାସନାର କୁଆର ମାଡିଲା । ଘର କାମରେ ଲାଗିଗଲା ପୁଣି ସେ ।

ସେଇଦିନ ସଂଧ ବେଳ ।

ସୁରେନ୍ଦ୍ର ଆଉ ଶେଫାଳୀର ଦେଖା ।

ଆକାଶରେ ଦୋଳ ପୂର୍ଣ୍ଣିମାର ଜହ୍ନ । ଆକାଶର ନୀଳ ଗ୍ଲାସରେ ଅସୁମାରୀ ତାରାର ସଭା । ମହାଦେବ ମଣ୍ଡପରେ ବଉଳ ଗଛର ପତ୍ରର ଗହଳି ଦେଇ କୁଢ଼େଇ ହୋଇ ଝଡ଼ୁଛି ମେଞ୍ଚା ମେଞ୍ଚା ଜୋତ୍ସ୍ନା । ସୁରେନ୍ଦ୍ର ଆଉ ଶେଫାଳୀ ସେଇ ମଣ୍ଡପରେ ବସିଛନ୍ତି । ଥିର ଥିର ପବନ ପିନ୍ଧୁଛି ।

ସୁରେନ୍ଦ୍ର କହିଲା—ଶେଫି, ମୋ ବାହାଘର ପାଇଁ ବୋଉ ମତେ ବ୍ୟସ୍ତ କଲଣି । ଆଜି ଖାଇବାବେଳେ ମୋ ପାଖରେ ବସି ସେ କେତେକଥା ଲୁହ ଛଳଛଳ ଆଖିରେ କହି ପକାଇଲା । ବହୁତ ବୁଝାଇ ଶୁଝାଇ ମୁଁ ତାକୁ ବନ୍ଦ କରିଛି । ଯା'ହେଉ ବିଚରା ମୋକଥା ବୁଝି ପାରି ଘର କାମରେ ଲାଗିଛି ।

ଶେଫାଳୀ କହିଲା—ସୁରୁ ଭାଇ, ଆଜିକାଲି ଦେଖିଲିଣି ବାପା, ବୋଉ ଯେଉଁଠି ବସୁଛନ୍ତି, ଖାଲି ମୋର ବାହାଘର କଥା ପକାଉଛନ୍ତି ।

କେଉଁଠି କାହା ବାପ ଅମୁକ ହୋଇଛନ୍ତି, କା' ପୁଅ ଅମୁକ ଚାକିରି କରନ୍ତି, ଜମି ଏତେ ଅଛି, ବ୍ୟବସାୟ ଅମୁକ ଯାଗାରେ ଭଲ ଚାଲୁଛି--ଇତ୍ୟାଦି ଇତ୍ୟାଦି ହେଉଛି । ବାପାଙ୍କ କଥାବାର୍ତ୍ତାରୁ ଯାହା ଜାଣିଲିଣି, ସେ ଏଇ ବର୍ଷ ବାହାଘର କରିଦେବା ପାଇଁ ଏକାନ୍ତ ଇଚ୍ଛୁକ ।

ସୁରେନ୍ଦ୍ର କହିଲା—ତା'ହେଲେ ତୋର କ'ଣ ଇଚ୍ଛା ? ତୁ ତୋ ବାପାବୋଉଙ୍କୁ ସିଧା ସଳଖ କହି ପାରିବୁ ?' ତୁ ଯଦି କହୁ, ମୁଁ ତା' ହେଲେ ମୋ ବାପା ବୋଉଙ୍କ ପାଖରେ କହିବି । ଦେଖିବା ସେମାନେ ଯାହା ଭାବନ୍ତି—

ଶେଫାଳୀ କହିଲା—କେମିତି କହିବି କହିଲ ସୁର ଭାଇ ? ଗୋଟିଏ ବୋଲି ଝିଅ ତାଙ୍କର ମୁଁ । କେତେ ସ୍ନେହ, ଶ୍ରଦ୍ଧା ସେମାନେ ମତେ କରନ୍ତି । ମନ ମୋର ଟିକିଏ ଦୁଃଖ ହେଲେ, ଦୁହେଁ ଯାକ ଖାଆନ୍ତି ନାହିଁ, ଜର ବାଧକା ମତେ ଟିକିଏ ହେଲେ, ରାତି ରାତି ବସି ସେମାନେ ଉଜାଗର ହୁଅନ୍ତି । ମୋ ସୁଖ ପାଇଁ, ମୋର ସୁନାର ଭବିଷ୍ୟତ ପାଇଁ ସେମାନେ ଚେଷ୍ଟା କରନ୍ତି । ମୁଁ ଯଦି ମୋ ମନକଥା ତାଙ୍କର ଆଗେ ବାଢ଼ିଦିଏ, ତା' ହେଲେ ସେମାନେ କଣ ଭାବିବେ ନାହିଁ ତ ? ହଁ, ଭାବିବେ । ମୋତେ ବିବାହ କରିଦେଇ କନ୍ୟାଦାୟିତ୍ୱରୁ ସେମାନେ ମୁକ୍ତ ହେବାକୁ ଚାହାଁନ୍ତି । ସେମାନେ ଭଲ ବର, ଘର ଖୋଜୁଛନ୍ତି, ଯାହାକୁ ପାଇ ମୋ ଜୀବନ ସୁଖମୟ ହୋଇ ଉଠିବ, ସେଇମିତି ପାତ୍ରଟିଏ ଖୋଜୁଛନ୍ତି । ମୁଁ ଯଦି ମୋର ସୁନାର ଭବିଷ୍ୟତ ପାଇଁ ମୁଁ ନିଜ ନିଜେ ତାଙ୍କର ଆଗେ ପ୍ରସ୍ତାବଟି ଉଠାଇ ବସିବି, ତା' ହେଲେ ବାପା ବୋଉ ଭାବିବେ, ଝିଅଟା ତାଙ୍କର ଅବାଧ୍ୟ, ମୁରବୀହୀନ । ଭିତରେ ଭିତରେ କାହାକୁ ଭଲପାଇ ଜବାବ ଦେଉଛି । ଆଜି ଲାଜ ସରମ ମୁହଁରୁ ଛଡ଼େଇ ଦେଇ ସେମାନଙ୍କ ଆଗରେ କହୁଛି । ତା'ହେଲେ, ସୁର ଭାଇ—ମୁଁ କେମିତି କହିବି କହିଲ ?

ତମେ ଆଉଁଗ ତମ ବାପାବୋଉଙ୍କ ପାଖେ କହ । ବଳେଇଥାଆ
ମୋ ବାପା ବୋଉଙ୍କ କାନକୁ ଯିବ ।

ସୁରେନ୍ଦ୍ର କହିଲା—ଶେଫି, ମୁଁ କେମିତି ଆଉ କହିବି କହିଲ ?
ମୋର ଯଦି କହିବାର ଥାଆନ୍ତା, ତା'ହେଲେ ଏତେଦିନ ଧରି
ମୁଁ ଆଉ ଅପେକ୍ଷା କରି ନଥାନ୍ତି । ମୋ ଉପରେ ସେମାନେ ଯେଉଁ
ଧାରଣା ନେଇଛନ୍ତି, ସେଇ ଧାରଣା ହୁଏତ ବଦଳି ଯିବ ।

ଏତକ କହି ସୁରେନ୍ଦ୍ର ନୀରବ ରହିଲା । ଦୁହେଁ ଏମିତି
କିଛିକାଳ ନୀରବରେ ବସିଲେ । ଆକାଶରେ ଜହ୍ନ ଯାଉଥାଏ ।

ସେଦିନ ଆଉ କେହି କାହାକୁ କିଛି କହିଲେନି । ଦୁହେଁ
ଉଠିଲେ, ନିଜ ନିଜ ଘରକୁ ଗଲେ । ଦୁହିଁଙ୍କର ମନ ଭିତରେ
ଗୁରେଇ ଗୁରେଇ କେତେ ପ୍ରଶ୍ନବାଚକ ଚିହ୍ନ ଉଠୁଥାଏ । ମନ
ଭିତରେ ସମାଧାନର ବାଟ ସେମାନେ ଖୋଜି ପାଉ ନଥାନ୍ତି ।

ଶେଫାଳୀର ବିବାହ ପ୍ରସ୍ତାବ ପଡ଼ିଛି ।

ବାପା ବୋଉ ତା'ର କେତେଆଡୁ କେତେ ବରପାତ୍ରର
ସନ୍ଧାନ ନେଉଛନ୍ତି । ବାପା ଆଉ ବୋଉ ଦୁହେଁଯାକ ଏକାଠି ବସି
ବାହାଘର ବିଷୟ କଥାବାର୍ତ୍ତା ହେଉଥିଲେ । ଛପି ଛପି ଶେଫାଳି
ଶୁଣୁଛି ।

ଛପି ଛପି ଶୁଣୁଥିଲା ବେଳେ ତା'ର ଇଚ୍ଛାହୁଏ ଦଉଡ଼ି ଆସି
କହିଦିଏ ଯାଇ ବାପା ବୋଉଙ୍କ ଆଗରେ—ମୋ ପାଇଁ ତମେ ଦୁହେଁ
ଏତେ ଚିନ୍ତା କରନି । ତମେ ତ ମୋର ମଙ୍ଗଳପାଇଁ ଯୋଗ୍ୟ ବର,
ଆଉ ଘର ଖୋଜୁଛ, କହିଲ ତେବେ, ସୁରଭାଇ କ'ଣ ମୋର

ଯୋଗ୍ୟ ବର ନୁହେଁ ? ତାଙ୍କୁ ପାଇ ଜୀବନ ମୋର କ'ଣ ହସି-ଉଠିବନି ? ମନଭିତରେର ସାହସ ତା'ର ଅତୁଳନ । ସେଇମିତ ଛପି ଛପି ଯାହା ଶୁଣେ ।

ଏବେ ଏଇ ବିବାହ ପ୍ରସ୍ତାବ ତା'ର ଘରେ ଉଠିଲା ଦିନୁ, ମନ ଭିତରେ ତା'ର ଆନ୍ଦୋଳନ ସୃଷ୍ଟି ହେଉଛି । ବାହାଘର, ବର, ଆଃ—ମନରେ ତା'ର ଅହେତୁକୀ ଏକ ଗର୍ବ ସୃଷ୍ଟି କରୁଛି । ସୁମନ୍ତ, ଶୁଭକାନ୍ତ ଆଉ ରତ୍ନକାନ୍ତଙ୍କର ନାମଗୁଡ଼ିକ ଶୁଣି ଶୁଣି ମନର ଦରିଆରେ ତା'ର ଢେଉ ଉଠୁଛି । ସେତେବେଳେ ସେଇ ଦରିଆର କେଉଁ ଅତଳ ଜଳରେ ସୁରେନ୍ଦ୍ରର ସ୍ମୃତି ବୁଡ଼ି ବୁଡ଼ି ଯାଉଛି ।

ଫାଲ୍‌ଗୁନ ମାସ, ବାପା ବୋଉ ତା'ର ଦୁହେଁ ଘର ଅଗଣାରେ ବସି କଥାବାର୍ତ୍ତା ହେଉଛନ୍ତି । ବାପା ତା'ର କହିଲେ – ଶୁଣିଲ ଶେଫାଳି ବୋଉ, ପୁଅଟି ଭୁବନେଶ୍ୱରରେ ଚାକିରୀ କରୁଛି । ବେଶ୍ ଦି' ପଇସା କମାଉଛି । ଦେଖିବାକୁ ସୁନ୍ଦର । ଉପମା ଦେବାକୁ ତାଙ୍କୁ ଏଠି କେହି ନାହାନ୍ତି । ସେଇଥିକୁ, ବୁଝିଲ, ଆମେ ଆମର ଜୋଇଁ କରି ପାଇଲେ, ଶେଫାଳୀ ଆମର ସୁଖୀ ହେବ । ଆମେ ନିଶ୍ଚିନ୍ତରେ ଦମ ନେବ ।

ଶେଫାଳୀ ବୋଉ କହିଲା—ମୋର ତ ଇଚ୍ଛା ସେଇଆ । ପିଲାଟି ଦେଖିବାକୁ ମୋ ଝିଅ ଭଳି ସୁନ୍ଦର ହୋଇଥିବ । ଦି' ଅକ୍ଷର ଭଲ ପାଠ ପଢ଼ିଥିବ । ଚାକିରୀ କରିଥିବ । ବାପା, ମା ତା'ର ଥିବେ । ମୁଁ ତ ସେଇମିତ ଜୋଇଁ ଚାହେଁ ।

ତା' ବାପା କହିଲେ – ବୁଝିଲ, ତା' ବାପା ମା'ର ସେ ହେଉଛି ଗୋଟିଏ ବୋଲି ପୁଅ । ଜମିବାଡ଼ି ବେଶ୍ ଅଛି । ସେଇଠି ଜବାବ୍-ପାତ ମୁଁ ଦେଇ ହେବ ବୋଲି ଠିକ୍ କରୁଛି । ପୁଅଟି ନାମ ଦେବେନ୍ଦ୍ର

ଶେଫାଳୀ ବୋଉ କହିଲା—ତା’ ହେଲେ ତ ଭଲ ହେଲା । ତମେ ଆଉ କେଉଁଠି ଆଖି ନ ପକାଇ ସେଇଠି ଜବାବ୍ ଦିଅ । ଝିଅ ମୋର ଶାନ୍ତିରେ ରହିବ ।

ଶେଫାଳୀ ଶୁଣୁଛି । କାନ ଭିତରଟା ତା’ର ଝାଇଁ ଝାଇଁ ହୋଇ ଯାଉଛି । ଭାବିଲା, ବାପା ଯଦି ସେଇଠି ଜବାବ୍ ଦେଇ ଦେବେ, ତା’ ହେଲେ ଆସନ୍ତା ବୈଶାଖରେ ବାହାଘର ହୋଇଯିବ । ବାପା ବୋଉଙ୍କର କଥାବାର୍ତ୍ତାରୁ ଜଣା ପଡ଼ିଲାଣି ସେଇଠାରେ ସେ କରିବେ । ତା’ ହେଲେ ସତରେ କ’ଣ ସେ ବାହା ହୋଇଯିବ ସେଇଠି ? ଆଉ ସୁର ଭାଇ ? ଜୀବନ-ଫୁଲର ପ୍ରଥମ ସୁରଭିରେ ଯିଏ ଦିନେ ମୁଗଧ୍-ବିଭୋର ହୋଇଥିଲେ, ଯାହାଙ୍କୁ ନେଇ ସୁନାର ସଂସାର ଗଢ଼ିବ ବୋଲି ସେ ଭାବିଥିଲା, ସେ କ’ଣ ସବୁ ଭଣ୍ଡୁର ହୋଇଯିବ ? ସୁର ଭାଇ ! କଥାରେ ତାଙ୍କର ଭରି ରହୁଛି କେତେ ସ୍ନେହ, କେତେ ଦରଦ । କେତେଥର, ତାଙ୍କର ଛାତି ଉପରେ ସେ ମଥା ରଖି ଶୋଇ ତେରଛେଇ ଆକାଶର ଜହ୍ନକୁ କେତେ ସେ ଚାହିଁଛି । ତାଙ୍କ ଠାରୁ ଦୂରରେ ରହି ବି ଗାଢ଼ ଅନ୍ଧକାରରେ ତାଙ୍କର ସ୍ମୃତି ମନ ଭିତରେ ଖେଳାଉଛି । ମିଛି ମିଛି ତାରା ଭିତରୁ ସେ ଦେଖିଛି ସୁରଭାଇର ଶାନ୍ତ ଆଉ ସୌମ୍ୟ ରୂପ । କେମିତି ସେ ଅନ୍ୟ କେଉଁଠି ବାହା ହେବ ?

ଅଉ ସେ କିଛି ଭାବିପାରେନା । ଦିନେ ଦିନେ ସେ କାନ୍ଦେ। ନୀରବରେ କାନ୍ଦେ । ବୋଉ ତା’ର ଆସେ । ଆଖିରୁ ଲୁହ ପୋଛି ଦିଏ ।

ଶେଫାଳୀର ମନ ଆକୁଳ ବିକଳ ହୋଇ ଉଠୁଛି ।

ରାତିରେ ଶୋଇବାକୁ ଗଲା ବେଳେ ଆଖିକୁ ତା’ର ନିଦ ଆସୁନା । ବାହାଘର କଥା ଖାଲି ଭାବୁଛି । ଘର ଭିତରର ଅନ୍ଧକାର ଭିତରେ ଦୁଇ ଆଖି ମୁଦି ସେ ଭାବିଗଲେ କେତେ କଥା । ସୁରେନ୍ଦ୍ର

ଅଉ ଦେବେନ୍ଦ୍ର···ଆଖି ଆଗରେ ତା'ର ଭାସି ଉଠନ୍ତି ସୌମ୍ୟ ରୂପ ନେଇ ।

ଦେବେନ୍ଦ୍ର, ବାପା ମା'ର ଗୋଟିଏ ବୋଲି ପୁଅ । ସୁନ୍ଦର ସ୍ୱାସ୍ଥ୍ୟ, ପୁଣି ଚାକିରି କରେ , ସେଇଆକୁ ବିବାହ କଲେ ସେ ହୁଏତ ସୁଖୀ ହୋଇ ପାରିବ । ଖତି କ'ଣ ? ବାପା ମାଆ ତ ଅଉ ଅନ୍ଧ ସାଜି ଅପାଦରେ ତାଙ୍କୁ ଠେଲି ଦେଇ ନାହାନ୍ତି ! ନିଜ ଝିଅର ସୁଖ ସମ୍ଭୋଗ ଦେଖିବା ପାଇଁ ସେମାନେ ତ ବିବାହର ଆୟୋଜନ କରୁଛନ୍ତି ! ଦେବେନ୍ଦ୍ରର ଅଦୃଶ୍ୟ ଦେହ ଆଉ ମୁହଁ ଶେଫାଳୀର ଆଖି ଆଗରେ ଭାସି ଉଠିଲା । ଦେହ ଆଉ ମନରେ ସତେ ଯେପରି ଅନନୁଭୂତ ଏକ କଂପନ ସେ ଅନୁଭବ କଲା ।

ପୁଣି ଭାବିଲା, ଦୂର ଛାଇ ! ଏକ ଅଦେଖା, ଅଚିହ୍ନା ଯୁବକର ସବୁ ଦୀପ୍ତି ଆଉ ସବୁ ଉଜ୍ଜ୍ୱଳତାକୁ ମଳିନ କରି ଭାସି ଉଠିଲା ସୁରେନ୍ଦ୍ରର ରୂପ । ରାତିର ଅନ୍ଧକାରରେ, ନିମୀଳିତ ଆଖିପତାର କୋଣ ସେଇ ସୁନ୍ଦର ଦୀପ୍ତିରେ ସତେ ଯେପରି ଆଲୋକିତ ହୋଇ ଉଠିଲା ! ଶେଫାଳୀ ଉଠି ପଡିଲା ବିଛଣାରୁ ।

ଘରୁ ଧୀରେ ଉଠି ବାହାରକୁ ଆସିଲା । ଘରର ଅଗଣାରେ ବସିଲା । ଅନ୍ଧାର ରାତି, ନିଶା ଗଡ଼ୁଛି । ବାପା ବୋଉ ଶୋଇ ପଡ଼ିଛନ୍ତି । ଆକାଶରେ ତାରାଗୁଡ଼ା ଚୁଣି ହୋଇ ପଡ଼ିଛନ୍ତି । ସେ ନୀରବରେ ମଠ ମଠ କରି ଚାହିଁ ରହିଲା ସେଇ ମିଟି ମିଟି ତାରାଗୁଡ଼ିକୁ । ସେଇ ମିଟି ମିଟି ତାରା ଭିତରେ ପୁଣି ତାକୁ ଦେଖା ଦେଲେ ସେଇ ଦୁଇଟି ଯୁବକ । ଜଣେ ଜଣାଶୁଣା—ଆଉ ଜଣେ ଅଜଣା, ଅଦେଖା । ସେଇ ଅସୁମାରି ବିଛୁଡ଼ି ହୋଇ ପଡ଼ିଥିବା ତାରା ଭିତରେ ସେମାନେ ସତେ ଯେପରି ପ୍ରତିଦ୍ୱନ୍ଦିତା କରୁଛନ୍ତି । ସେଇ ପ୍ରତିଦ୍ୱନ୍ଦିତାକୁ ସେ ନିରୀକ୍ଷଣ କରି ଚାହୁଁଛି । ପ୍ରତିଦ୍ୱନ୍ଦିତାରେ

କେତେବେଳେ ସୁରେନ୍ଦ୍ର ବିଜେତାର ଗୌରବ ନେଉଛନ୍ତି, ଅବା ଆଉ କେତେବେଳେ ଦେବେନ୍ଦ୍ର ବି ବିଜେତାର ଗୌରବ ନେବାକୁ ନିୟମ ଆରମ୍ଭ କରୁଛନ୍ତି । ସେ କାହାର ପ୍ରତି ସମଦର୍ଶୀ ହୋଇ ପାରୁନି ।

ସେ ବସି ଏଇମିତି ଭାବୁଛନ୍ତି—ଅଗଣା ଦେଇ ଫଡ ଫଡ଼ କରି ଡେଣା ଝାଡ଼ି ଉଡିଗଲେ ବୋଧେ ପକ୍ଷେ ବାଦୁଡ଼ି । ମନ ଭିତରେ ତା'ର ଛନକା ପଶିଲା । ଉଠି ଥରେ ପୁଣି ଶୋଇବା ଘରକୁ ଆସିଲା । ଶୋଇବାକୁ ଚେଷ୍ଟା କଲା ।

ରାତି ସେଦିନ ଅନେକ ହୋଇ ଯାଇଥିଲା । ଏଇମିତି ଭାବୁ ଭାବୁ କେତେବେଳେ ତା'ର ଆଖିରେ ନିଦ ଭରି ଆସିଲା ।

ଅଞ୍ଜଳୀର ବିବାହ ପ୍ରସ୍ତାବ ପଡ଼ିଛି ।

ବୋଉ ତା'ର ସବୁ ଆୟୋଜନ କରୁଛନ୍ତି । ଯେକୌଣସି ଉପାୟରେ ହେଉ, ସେ ଅଞ୍ଜଳୀର ବିବାହ ସାରି ଦେବ, କନ୍ୟା ଦାୟରୁ ମୁକ୍ତ ପାଇବ ।

ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ପଦରୁ ଇସ୍ତଫା ଦେଇ ସାରିଲେଣି । ବିବାହ ପାଇଁ ଏବେ ଘରେ ରହୁଛନ୍ତି ।

ଦେବେନ୍ଦ୍ର ଘରକୁ ଆସିଛନ୍ତି । ଅଞ୍ଜଳୀର ବୋଉ ତାଙ୍କୁ ବାରମ୍ବାର ଡକାଇ ବାହାଘର ବିଷୟରେ କଥା ପକାଉଛନ୍ତି ।

ଦିନେ । ଅଞ୍ଜଳୀର ବୋଉ କହିଲେ—'ଦେବ, ଅଞ୍ଜଳୀ ପାଇଁ ତ ତମେ କେହି ଟିକେ ଖୋଜ୍ ଖବର ନେଲନି । ମୁଁ ନିଜେ, ଯା ହେଉ, ଗୋଟିଏ ବରପାତ୍ରର ସନ୍ଧାନ ନେଇଛି । ଭଲ ଘର,

ଭଲ ଘର । ବି. ଏ. ପଢ଼ିଛନ୍ତି । ଚାକିରି କରୁଛନ୍ତି । ବାପା ବି ତା'ର ଜଣେ ପ୍ରତିଷ୍ଠିତ ଲୋକ, ସେ ଅଞ୍ଚଳରେ ତାଙ୍କର ଭାରି ଖ୍ୟାତି ଅଛି । ପିଲାଟିର ନାମ ସୁରେନ୍ଦ୍ର । ଭଲ ହେବନି ?

ଦେବେନ୍ଦ୍ରର ମନ ଭିତରେ ଅସହ୍ୟ ହାହାକାର ନିଆଁ ଜଳୁଛି । ସୁରେନ୍ଦ୍ର ! ଭଲ ଘର ! ପୁଣି ବି.ଏ ପଢ଼ିଛନ୍ତି ! ମାନସିକ ଯନ୍ତ୍ରଣାରେ ଛଟପଟ ହୋଇ ସେ ଉତ୍ତର ଦେଲା—ହଁ, ମାଉସୀ, ଝିଅ ତମର, ତା'ର ସୁଖ ସୁବିଧା ଅନୁସାରେ ଘର ଖୋଜିଛ, ବର ପାଇଛ. ଆଉ ଅମକୁ କାହିଁକି ପଚାରୁଛ ?

ଅଞ୍ଜଳୀ ବୋଉ ଉତ୍ତର ଦେଲେ—କ'ଣ କହିବି ବାପ ! ତମକୁ ଅନେକ ଦିନ ହେବ କହୁଥିଲି, କେଉଁଠି ହେଲେ ଆଖି ପକାଇଲନି । କେତେଦିନ ଝିଅ-ଝିଅକୁ ଘରେ ସାଇତି ରଖିବି ? ଯା' ହେଉ, ମୁଁ ଖୋଜୁଥିଲି ଯେମିତି, ଦାଇବ ସେଇମିତି ଗୋଟିଏ ଜୁଟାଇଛନ୍ତି । ଏତେ ସମ୍ପତ୍ତି, ବାଡ଼ି ମୋର କ'ଣ ହେବ ? କେଉଁ ପୁଅ ଅଛି ଯେ ଆସି ଭୋଗ ଦଖଲ କରିବ ? ସେଇ ଅଞ୍ଜଳୀ ନାଆଁରେ ସବୁ କରି ଦେବି । ବାଡ଼ିଘର ବେଲକୁ ଜମି କରୁଛି ବଳା ଯାମୀ କୌତୁକ କାମ ଚଳାଇ ଦେବ ।

ଦେବେନ୍ଦ୍ର କିଛି ଆଉ ଜବାବ ଦେଇ ପାରୁନି । କିଛି ସମୟ ତୁନି ହୋଇ ବସି କହିଲା—ହେଉ ମାଉସୀ, ବାହାଘର ବେଳେ ଡାକିବ । ଯେତିକି ଅନ୍ତତଃ ସାହାଯ୍ୟ କରିବାର କଥା, ସେତିକି ମୁଁ କରିବି । ଆଜି ଯାଉଛି ।

ଏତିକି କହି ଦେବେନ୍ଦ୍ର ଚାଲିଗଲା । ବାହାରେ ଫଗୁଣର ଖରା—ଦେବେନ୍ଦ୍ରର ମୁଣ୍ଡରେ ଯେତେ ଯେପରି ଅଙ୍ଗାର ଛୁଟି ପଡ଼ୁଛି । ଭାବିଲା, ଆଜି ଅଞ୍ଜଳୀଠାରୁ ଶେଷ ବିଦାୟ ନେବ । ଯଦି ଅଞ୍ଜଳୀ

ଅନ୍ୟ ଜଣକୁ ବିବାହ କରି, ତା' ଜୀବନରେ ସବୁ ସୁଖ ସମ୍ଭୋଗ ସେ ପାଇ ପାରିବ, ତାହେଲେ ତ 'ର ମନା ନାହିଁ ।

ସେଇ ଦିନ ସନ୍ଧ୍ୟାବେଳେ । ଅଞ୍ଜଳୀ ଘରେ ଅଛି । ବୋଉ ତା'ର ବାହାରକୁ ଯାଇଛନ୍ତି । ଦେବେନ୍ଦ୍ରର ମନରେ ଅନ୍ତରର କଳାମେଘ ।

ଦେବେନ୍ଦ୍ରଙ୍କୁ ଦେଖି ଅଞ୍ଜଳୀ କହିଲା – ସଞ୍ଜ ପହରେ କୁଆଡ଼େ ଦେବଭାଇ ? ବୋଉ ବାହାରକୁ ଯାଇଛନ୍ତି । ବସ ।

ଦେବେନ୍ଦ୍ର କହିଲା — ଅଞ୍ଜଳୀ, ବାହାଘର ତୋର କେବେ ? ଜବାବ ପଡ଼ି ସରିଲାଣି ?

ଅଞ୍ଜଳୀ ଅଭିନୟ କରି ପରି କହିଲା — ମୁଁ ତ କିଛି ଜାଣେନି ଦେବଭାଇ, ତମଠାରୁ ଯାହା ମୋ ବାହାଘର ବିଷୟରେ ମୁଁ ଖବର ପାଉଛି ।

ଦେବେନ୍ଦ୍ର କଣ୍ଠରେ ଅବସାଦ ନେଇ, ଆଖିରେ ଲୁହ ଭରି କହିଲା — ସତ କରି କହ ଅଞ୍ଜଳୀ, ତୋର କ'ଣ ଇଚ୍ଛା ? ମତେ ଯଦି ମନା କରୁ, ମୁଁ କିଛିଏ ହେଲେ ଦୁଃଖିତ ହେବିନି । ବରଂ ତୋତେ ଆଶୀର୍ବାଦ କରି ଫେରିଯିବି ମୋ ଘରକୁ ।

ଅଞ୍ଜଳୀ କହିଲା — ସତ କରି କହୁଛି ଦେବଭାଇ, ବୋଉ ସବୁବେଳେ ମୋ ବାହାଘର ପାଇଁ ବ୍ୟସ୍ତ । ସେ କେଉଁ ଗାଁରେ କେଉଁ ସୁରେନ୍ଦ୍ରକୁ ମୋ ବର ପାଇଁ ସେ ମନୋନୀତ କରିଛନ୍ତି । ସେଇଟି ମୋତେ ବାହା କରିଦେବା ପାଇଁ ସେ ଖୁବ୍ ଲାଗି ପଡ଼ିଛନ୍ତି । ତା' ଛଡ଼ା ମୁଁ ଆଉ କିଛି ଜାଣିନି ଦେବଭାଇ ।

ଦେବେନ୍ଦ୍ର କହିଲା – ମତେ ଭୁଲିଛୁ କି ନାହିଁ କହିଲୁ ? ଯଦି ମତେ ଭୁଲି ନାହୁଁ, ତା'ହେଲେ ସତ ସତ ତୋ ବୋଉକୁ କହ, ମୋ ବାହାଘର ପାଇଁ ସେମିତି ଜବାବ୍ ଦେବ' ନା । ଜବାବ୍ ଦେଇ ଦେଲେ ଅଞ୍ଜଳୀ, ସବୁ ସରିଯିବ । ତୁ ଯଦି ଏକାନ୍ତ ଭାବରେ

ମୋ ପାଇଁ ଚିନ୍ତା କରୁଥାଉ, ତା' ହେଲେ ଏତିକି ଅନ୍ତତଃ କହି ଦେ। ନହେଲେ ଅତୀତର ସବୁ ସ୍ନେହ ସବୁ ଗଙ୍ଗା ପାଣିରେ ପଡ଼ିବ। ଆଜି ତୁ କେବଳ ମୋର ଜୀବନଭର ମାନସୀ ହୋଇ ରହିବୁ, ମତେ କନ୍ଦାଇ କନ୍ଦାଇ ମାରିବୁ।

ଅଞ୍ଜଳୀ କହିଲା—ଦେବଭାଇ, ମୁଁ କେମିତି କହିବି କହିଲ ? ମୁଁ ଯଦି ତମର ପ୍ରସ୍ତାବ ତା' ଆଗରେ ରଖିବି, ମୋ ଉପରେ ସେ କି ଧାରଣା ନେବ କହିଲ ? ତମେ କ'ଣ ଭାବୁଛ ?

ଦେବେନ୍ଦ୍ର ଟିକିଏ ଉତ୍ତେଜିତ ହୋଇ କହିଲା—ତା' କହିଲେ ମୁଁ ଜାଣି ପାରୁଛି ଅଞ୍ଜଳୀ, ତୋର ବିବାହ ସେଇଠି ରେ ହେବାପାଇଁ ତୁ ତୋର ମତ ଦେଇଛୁ। ଅତୀତରେ ମତେ ତୁ ପ୍ରତାରିତ କରିଛୁ।

ତୁ ଜାଣିନୁ ଅଞ୍ଜଳୀ, କାହାପାଇଁ ମୁଁ ଏ ପର୍ଯ୍ୟନ୍ତ ଅବିବାହିତ ରହିଛି—କାହା ପାଇଁ ବାପା ଓ ବୋଉଙ୍କର ଜିଦ୍‌କୁ ମୁଁ ଏଡ଼ାଇ ଦେଇଛି—କାହି ପାଇଁ ପ୍ରତି ଛୁଟିରେ ଗୁଳକଟା ଚୁଇଁକୁ ଛାଡ଼ି ଦଉଡ଼ି ଆସେ ଗାଁ ମାଟିକୁ ? ମତେ ଆଜି ତେଣୁ ପରିଷ୍କାର କରି କହ ଅଞ୍ଜଳୀ, କ'ଣ ତୋର ଇଚ୍ଛା ?

ଅଞ୍ଜଳୀ ଆଉ କିଛି କହି ପାରୁନି। ସେ ଯେତେ ଚେଷ୍ଟା କରୁଛି, ଦେବେନ୍ଦ୍ରକୁ ସାନ୍ତ୍ୱନା ଦେବାକୁ, ଦେଇ ପାରୁନି। ମନ ଭିତରର ଦମ୍ଭ ଓ ସାହସ ତା'ର ସତେ ଯେପରି ମଉଳି ମରି ଆସୁଛି ! ଦେବେନ୍ଦ୍ରର ଏ ଧରଣର ବିକଳିଆ ଢଙ୍ଗ ଦେଖି ସେ ବ୍ୟସ୍ତ ହୋଇ ପଡ଼ିଲା। କହିଲା—ଦେବଭାଇ, ତମେ କାହିଁକି ଇମିତି ହେଉଛ କହିଲ ? ତମର ଏ ଧରଣର ଢଙ୍ଗ ତ ଦିନେ ହେଲେ ମୁଁ ଦେଖି ନ ଥିଲି ? କିଏ କହିଲା, ମୁଁ ତମକୁ ପ୍ରତାରିତ କରିଛି ? କିଏ କହିଲା, ମୁଁ ତମକୁ ଭୁଲିଛି ? ମୁଁ ତମକୁ ଭୁଲିନି। ପ୍ରାଣ ଦେଇ ଭଲ ପାଉଛି। ସ୍ନେହ କରିଛି। ମୋର ଭଲ ପାଇବାକୁ, ମୋର ସ୍ନେହ ମମତାକୁ ତମେ ହଠାତ କିପରି ଭୁଲି ଯାଇ ରାଗି ଉଠୁଛ ?

ଏତକ କହି ଅଞ୍ଜଳୀ ଆଉ କିଛି କହି ପାରିଲାନି। ଧାଁ ଦେଇଦେଲା ତା'ର ଖାଲି ଅଟିବାକୁ ଲାଗିଲା।

ଦେବେନ୍ଦ୍ର ନୀରବ। ସେ ଅଉ କିଛି ଉତ୍ତର ଦେଲେନି। ଦୁହେଁ ଘରର ଅନ୍ଧାରରେ ସେମିତି ବସିଛନ୍ତି। ଅଞ୍ଜଳୀର ବୋଉ ଆସି ପହଞ୍ଚିଲେ।

ଦେବେନ୍ଦ୍ର ଯିବାକୁ ବାହାରିଲେ। ଅଞ୍ଜଳୀ ବୋଉ କହିଲେ— କୁଆଡ଼େ ଆସିଥିଲ ଦେବ, ବସୁନ, ପଳାଉଛ କାହିଁକି ? କ'ଣ କିଛି କେଉଁଠି କାମ ଅଛି ?

ଦେବେନ୍ଦ୍ର କହିଲେ--ନାହିଁ ମାଉସୀ, କାଲି ମୁଁ ଭୁବନେଶ୍ୱର ଚାଲି ଯାଉଛି। ତେଣୁ ଆସିଥିଲି ଟିକେ ଆଡ଼େ ବୁଲିଯିବା ପାଇଁ। ଦେଖିଲି ତମେ ନାହଁ। ଆଉ ଅଯଥାରେ ବସିବି କାହିଁକି?

ଅଂଜଳୀର ବୋଉ କହିଲେ—ଦେଇ ଟିକିଏ ବସ, ଯିବ ତ ଆଉ! ଦେବେନ୍ଦ୍ର ବସିଲେ। ଅଂଜଳୀ ବୋଉ କହିଲେ—ଦେବ, ତମେ ତ କେହି ବୁଝିଁଲନି ! ମୁଁ ଭାବୁ ଅଂଜଳୀର ବବାହ ପାଇଁ କେତେ କେତେ କବାଦ୍ ଦେଇ ଦେଲି। ତମେ ଜାଣିଛ, ଦେଉଳ-ପୋଡ଼ାର ସୁରେନ୍ଦ୍ରକୁ। ବାପା ନାଁ ତା'ର ଶୁଭଙ୍କର ଦାସ—ଏବେ ପେନ୍‌ସେନ୍ ନେଉଛନ୍ତି। ବେଶ୍ ଖାନଦାନୀ, ବୁନିଆଦ ଘର— ପିଲାଟି ବି. ଏ. ପାଏ କରିଛି। ଦେଖିବାକୁ ସୁନ୍ଦର। ସେଇଠି କବାବ ଦେଲି। ଯାହା ଯୌତୁକ ତାଙ୍କ ଘର ତରଫରୁ ଯାହା ଦାବୀ ହେଲା, ତାକୁ ମୁଁ ପୂରଣ କରିବି। ତୁମେ ଚିହ୍ନିଛ ଦେବ, ସୁରେନ୍ଦ୍ରକୁ ? ତମେ ପରା କଟକ କଲେଜରେ ପଢୁଥିଲ ?

ଦେବେନ୍ଦ୍ର ଆଉ କି ଉତ୍ତର ଦେବ, ଭାବି ପାରୁନି। ମନ-ଭିତରେ ତା'ର ଗୁଡ଼ିପିଡ଼ି ଲାଗିଛି। ମୁଣ୍ଡ ଘୁରିବାକୁ ଆରମ୍ଭ କଲାଣି। ଛୋଟ ଢୋକ ଗିଳି କହିଲେ—ମାଉସୀ, ମୁଁ ତାକୁ ଚିହ୍ନେନି। ତାଙ୍କ ଘରର କାହାକୁ ବି ଜାଣିନି।

ଅଂଜଳୀ ବୋଉ କହୁଥିଲା—ତୋର ବା'ଣ ମତ ଦେବ ? ସେଠି ଭଲ ହେବନି ? ଅଂଜଳୀ ମୋର ସୁଖୀ ହେଲେ ହେଲା ।

ଦେବ କହିଲା—ତମେ ଯଦି ଭାବୁଛ ଭଲ ହୋଇ, ଆଉ ମୋର ମତ ସେଠି ଦରକାର କ'ଣ ? ଯେତେବେଳେ ଜବାବ୍ ଦେଇ ସାରିଛ, ତମକୁ ସେତେବେଳେ ସେଇଠାରେହିଁ ବିବାହ ଦେବାକୁ ପଡ଼ିବ । ହେଉ, ମୁଁ ଯାଉଛି ମାଉସୀ । ଅଂଜଳୀ ବାହାଘରକୁ ମୁଁ ଆସିବାକୁ ଚେଷ୍ଟା କରିବି ।

ଏତିକି କହି ବିଜୁଳି ବେଗରେ ଚାଲି ଆସିଲା ଦେବେନ୍ଦ୍ର । ସେ ଚାଲି ଚାଲି ଘରକୁ ଆସୁଛି । ବାଟରେ ଆସୁଥିଲା ବେଳେ, ସେ ଅନୁଭବ କରୁଥିଲା, ଗାଁର ସେଇ ପରିଚିତ ଅଙ୍କା ବଙ୍କା ରାସ୍ତା, ସତେ ଯେପରି ତାକୁ ଦେଖା ଯାଉନାହିଁ । ବାଟ ଅସ୍ତାଲି ଅଣ୍ଡାଳି ସେ ଚାଲିଛି । ଗାଁର ସେଇ ପରିଚିତ ଗଛ, ପତ୍ରର ଗୁଡ଼ାକ ପବନରେ ଖଡ଼ ଖଡ଼ ହେଉଛନ୍ତି—ସେ କିନ୍ତୁ ମୂକ, ପାଷାଣ – ସେ ଚାଲିଛି ଘରକୁ.........

ଦେବେନ୍ଦ୍ର ଘରେ ପହଞ୍ଚିଲା, ବୋଉ ତା'ର ଯେତେ ଖାଇବାକୁ କହିଲା, ସେ ଖାଇଲାନି । ଖଟ ଉପରେ ଶୋଇ ଚିନ୍ତା ଭାବୁଛି ସେ ଅଂଜଳୀର କଥା । ଅଂଜଳୀ ସତରେ କ'ଣ ତାକୁ ଠକିଛି ? ହଁ ସେ ତାକୁ ଠକିଛି । ତା' ନ ହୋଇଥିଲେ, ତା' ବୋଉର ପାଖ ନ ସେ ନିଶ୍ଚିତ କହି ଦେଇ ଥାଆନ୍ତା, 'ବୋଉ, ମୁଁ ଦେବ ଭାଇକୁ ବିବାହ କରିବି ।' ଯୌବନର ପ୍ରଥମ ପାହାଚରେ ସେ ଯେତେବେଳେ ଗୋଡ଼ ଦେଇଥିଲା, ସେତେବେଳେ ବୋଧେ ଅତି ଆପଣାର ଭାବରେ ସେ ତାଙ୍କୁ ଭଲ ପାଉଥିଲା; ସ୍ନେହ କରୁଥିଲା । ଟିକେ ନ ଦେଖି ଥିଲେ ଅଭିମାନ କରୁଥିଲା, ରୁଷୁଥିଲା । କିନ୍ତୁ ବିବାହ କରିବାର ବୟସ ଯେତେବେଳେ ଆସିଲା, ଆଉ ଜଣେ ତରୁଣକୁ ବରପାତ୍ର ରୂପେ

ଗ୍ରହଣ କରିବା ପାଇଁ ସେ ବୋଧେ ଇଚ୍ଛା କରୁଛି । ଇସ୍ ; ଅଂଜଳୀ କେତେ ମିଥ୍ୟାବାଦିନୀ ! କେତେ ପ୍ରତାରକ ! ତା'ର ପାଇଁ ଅନ୍ୟ ପର୍ଯ୍ୟନ୍ତ ସେ ବାହା ହେଲାନି । ବାପା ବୋଉ କେତେ ଆଗ୍ରହରେ ତା'ର ବିବାହ ପ୍ରସ୍ତାବ ପକାନ୍ତି । କେତେଆଡ଼ୁ କେତେ ପ୍ରସ୍ତାବ ଅସେ, ତା'ର ପାଇଁ ସେ ସମସ୍ତଙ୍କୁ ମନା କରେ ।

ପୁଣି ଭାବିଲା—ନାଁ, ଅଂଜଳୀ କେବେ ତାକୁ ଠକିନି, ଛଳନା କରିନି । କହୁଥିବାର ସେ ତାକୁ ପରୀକ୍ଷା କରୁଛି—ତା' ଗ୍ଧଭତଳର ବେଦନାକୁ ସେ କେତେଥର ମାପିଛି—ତା' ହୃଦତଳର ଦର୍ପଣରେ ଅଂଜଳୀର ରୂପ କେତେଥର ପ୍ରତିବିମ୍ବିତ ହୋଇଛି । ଏତେ କରି ସେ କିପରି ତାକୁ ଠକିବ ? କିପରି ଭୁଲିଯିବ ? ବାହା ହୋଇ ଯାଇଲା ପରେ ସ୍ୱାମୀ ପାଖରେ ଶୋଇ କ'ଣ ସେ ତା' କଥା ଭାବିବନି ? ତା' ସ୍ୱାମୀ ଯେତେବେଳେ ତା'ର ଗାଲ ଉପରେ ତାଙ୍କର ଦୁଇ ଓଠକୁ ଥୋଇ ଦେବେ, ସେତେବେଳେ କ'ଣ ତା'ର ଓଠର ଚୁମ୍ବନ ପରଶ ସେ ପାଇ ପାରିବନି ? ନାଁ, ତା' ବୋଉକୁ ବୋଧେ ଭୟରେ ସେ କିଛି କହି ପାରୁନି । କାହିଁକି ସେ କହୁନି ? ଏତିକି ସାହସ କ'ଣ ତା'ର ନାହିଁ ? ଏତିକି ଯଦି ତା'ର ସାହସ ନଥିଲା, ଶକ୍ତି ନ ଥିଲା, ତା'ହେଲେ କେଉଁ ସାହସ ନେଇ ସେ ତା' ସହ ଏତେ ମିଶୁଥିଲା ? ଅଳାପ କରୁଥିଲା ? ଦେହ ଉପରେ ଦେହ ଢାଳି ଦେଉଥିଲା ??

ଭାବିଲା, ସେ ଯଦି ବାହା ହୋଇଯାଏ, ସେ କ'ଣ କରିବ ? ସେ କ'ଣ ଏମିତି ଅବିବାହିତ ରହିବ ! ଏଇ ଅବିବାହିତ ଜୀବନ ନେଇ ଯଦି ସେ ଦିନ ବିତାଇବ, ଏବଂ ସେଇ ଜୀବନକାଳ ଭିତରେ ଯଦି ଅଂଜଳୀ ଆଉ ତା'ର ସ୍ୱାମୀ ଉଭୟେ ଦିନେ ଦେଖା ହେବେ, ତା' ହେଲେ କିପରି ସେ ଧୈର୍ଯ୍ୟ ଧରି ସେମାନଙ୍କ ଆଗରେ ଠିଆ ହେବ ? କଥା କହିବ ? ନାଁ, ସେ ବାହା ହେବ । ଅଂଜଳୀର ସ୍ମୃତିକୁ

ମନଟିକୁ ପୋଟ୍ଟୁ ପଢ଼ାଇବାକୁ ହେବ । ତା'ର ବଦଳରେ ଆଉ ଜଣକୁ ବିବାହ କଲେ ଅଂଜଳୀର କଥା ଆପେ ଆପେ ମନ ଭିତରୁ ଧୋଇ ହୋଇଯିବ ।

ଦେବେନ୍ଦ୍ର ସେଦିନ ଏଇମିତି ଭାବୁଛି·····

ସେଇଦିନ ରାତି—

ଅଂଜଳୀ ଖାଉନି । ବୋଉ ତା'ର ତାକୁ ପେଟେଇ ବୁଝଉଛି, ସେ ବୁଝୁନି । ମୁହଁକୁ ଧାନ ଉଷୁଆଁ ହାଣ୍ଡି ପରି କରିଛି । ବସିଛି, ତା'ର ଆଗରେ ଭାତ ଥାଳି ଥୁଆ ହୋଇଛି । ବାପୁକୁ ଅଂଜଳି ଦେଇ ବସିଛି ।

ଅଂଜଳୀର ବୋଉ କହୁଛି — ଖାଇଦେ ମା'—ଝିଅ ଜନମ ତ ପର ଘରକୁ । ଘରୁ ବିଦା ହେଲାବେଳେ ସମସ୍ତଙ୍କର ଦୁଃଖ ହୁଏ; ତୋର ଦୁଃଖ ହେଉଥିବ । ଯେଉଁ ଘରେ ଅଠର ବର୍ଷ କଟିଥିଲୁ, ଯେଉଁ ଧୂଳି ମାଟିରେ ଅଠରବର୍ଷ ଖେଳିଥିଲୁ, ସେ ଘର, ସେ ଧୂଳି କା'ଲି ପରା ସାତ ସପନ ହେବ । 'ବୋଉ ବୋଉ' ଡାକ ଭୁଲି ହୋଇଯିବ । ଝିଅ ଦେହର ସବୁ ଅଳି ଅର୍ଦ୍ଦଳି ଆପେ ଆପେ ସରିଯିବ ।'

ଅଂଜଳୀ ଆହୁରି କାନ୍ଦୁଛି । ଉଦ ଉଦ ହୋଇ ଆଖିରୁ ତା'ର ଲୁହ ବହୁଛି । ଅଂଜଳୀର ବୋଉ ଭାବୁଛି—ଝିଅ, ବାହା ହୋଇଯିବା ବେଳ କାନ୍ଦୁଛି, ଲୁହ ଢାଳୁଛି । କିନ୍ତୁ ଅଂଜଳୀ କାହିଁକି କାନ୍ଦୁଛି, ସେ ଜାଣିନି, ଜାଣି ପାରୁନି । ଅଂଜଳୀର ମନ ତଳେତଳେ ଯେଉଁ ଦୁଃଖର ନଈ ସୁଅ କାଟି କାଟି ବହିଯାଉଛି, ସେ ସୁଅକୁ ସେ ବା ବୁଝିବ କେମିତି !

ଅଂଜଳୀର ଲୁହ ଥମିନି । ସେ ବେଶୀ ବେଶୀ କାନ୍ଦିବାକୁ ଆରମ୍ଭ କରୁଛି । ଅଂଜଳୀର ବୋଉ କହୁଛି—କାହିଁକି ଏତେ କାନ୍ଦୁଛୁ

କହିଲୁ ? ତୋର କପାଳ ନାହିଁ—ଭାଇ ନାହିଁ—ତେବେ କେଉଁ-
ଥିରେ ଉଚେଇ ମୁଁ ଊଣା କରେଇଛି ?

ଅଂଜଳୀ ପୁଣି କାନ୍ଦିଲା·····

ଅଂଜଳୀ ବୋଉ କହିଲା—ଛି ମା' ତୁନି ହୁଅ । ଏଇ ଗାଁରେ
ମୁଁ ତ କେତେ ଝିଅ ଦେଖିଛି, ତୋର୍ ପରି କେଇ ତ ଏମିତି କାନ୍ଦ
ନାହାନ୍ତି ? ତୁ ମୋର ଗୋଟିଏ ଝିଅ ନୁହଁ ପୁଅ; ତୋ'ର୍ ସୁଖ
ପାଇଁ, ତୋର୍ ମଙ୍ଗଳ ପାଇଁ, ଖୋଜି ଖୋଜି ଉପଯୁକ୍ତ ବରଟିଏ
ଜୁଟାଇଛି । ତା'ର୍ ସହ ତୁ ହସି ହସି ଦିନ ନେଉଲ, ମୋ ଆଖି ସାର୍ଥକ
ହେବ । ତମର ସୁଖର ସଂସାର ଦେଖିଲେ, ମୋ ଆଖିରୁ ଆନନ୍ଦର
ଲୁହ ଗଡ଼ିବ ।

ଅଂଜଳୀର ଆଖିରେ ଲୁହ···ସେ କଇଁ କଇଁ ହୋଇ କାନ୍ଦିଲା ।
ଅଂଜଳୀ ବୋଉର ଲଗାକାନ୍ଥା ଲୁହରେ ଜୁଡ଼ୁ ବୁଡ଼ୁ ହେଲା ।
ସିଏ ବି କାନ୍ଦିବାକୁ ଆରମ୍ଭ କଲା । ଭିତ ଶୁଖୁଛି । ଲଣ୍ଠନଟି ଦିକ ଦିକ
ହୋଇ ଜଳୁଛି—ଘରର ବାହାରେ ରାତିର ଅନ୍ଧାର ଆହୁରି ବହଳ
ହେଉଛି ।

ଅଂଜଳୀ ଅନୁଭବ କରୁଥିଲା, ତା'ର ଆଖିର ଲୁହକୁ ଦେବଭାଇ
ସତେ ଯେପରି ବତାଉଛି । ଦେବଭାଇ କଣ୍ଠ ଦେଶକୁ ତା'ର ଯେପରି
ମାଡ଼ି ବସିଛି । ସେ କିଛି କହି ପାରୁନି । ସେଇ କାନ୍ଦିବା ଭିତରେ
ସେ ଭାବୁଛି ତା'ବୋଉକୁ କହିବ—ବୋଉ; ମୁଁ ଦେବଭାଇଙ୍କ କଥା
ଦେଇଛି—ତାଙ୍କୁ ହିଁ ମୁଁ ବାହା ହେବ । ମୋ ପାଇଁ ତୁ କାହିଁକି ଅନ୍ୟ
କୁଆଡେ ପ୍ରସ୍ତାବ ପକାଇଲୁ ? ବିବାହର ଆୟୋଜନ କଲୁ ? ହେଇ
ଦେଖିଲୁ, ଆଜି ସଂଜବେଳେ କିପରି ଭଂଗା ହୃଦୟ ନେଇ ଫେରି-
ଗଲେ ସେ ଆମ ଘରୁ ! ତୁ ଯେତେ କଥା କହିଲୁ, କେଉଁଥିରେ, ତାଙ୍କର
ଅଭାବ ଥିଲା ? ସେତା କଥା ଶୁଣିଲାବେଳେ ତାଙ୍କ ଆଖି ଦି'ଟା କେମିତି

ଦେଉ କେଉ ହୋଇ ଉଠିଥିଲା ! ସେ ଆଉ କିଛି ଭାବି ପାରିଲାନି ।
ସେ ଆଉ କାନ୍ଦି ବି ପାରିଲାନି । "ବୋଉ ବୋଉ" କହି ତା'ର ବୋଉର
କଣ୍ଠକୁ ଦୁଇ ହାତରେ ଜାବୁଡ଼ି ଧରିଲା ।

ତା' ବୋଉ ଅଂଜଳୀର ଓଠକୁ ଧରି କାନ୍ଦିଲା, ଲୁହ ପୋଛି
କହିଲା—କହ ମା, କ'ଣ ତୋର କହିବାର ଅଛି ? କାହିଁକି
କାନ୍ଦୁଛୁ ? ଇମିତି କାହିଁକି ହେଉଛୁ ? କାନ୍ଦି କାନ୍ଦି ଆଖି ଦି'ଟା
ତୋର ଫୁଲିଲାଣି । କିଛି କହୁନୁ ! ତୁ ଯଦି ଇମିତି ହେଉ,
ସବୁବେଳେ ଲୁହ ପୋଛୁ, ମୁଁ କିପରି ନିଶ୍ଚିନ୍ତ ହେବି ? ତୋର ପାଇଁ
ବିଧବା ଯନ୍ତ୍ରଣାକୁ ଭୁଲିଛି । ଜୀବନର ସବୁ ଦୁଃଖ, ସବୁ କଷଣକୁ
ପଛରେ ପକାଇ ଦେଇ ତୋର ମୁହଁକୁ ଚାହିଁ ମୁଁ ଦିନ ନେଉଛି ।
ଆଜି ଯଦି ତୋର ଆଖିରେ ତୋର ଶୁଖ ବାହାଘର ବେଳେ, ମୁଁ
ଲୁହ ଦେଖେ, କାନ୍ଦ ଶୁଣେ, କିପରି ମୁଁ ଜୀବନ ଧରି ରହିବି ?
ମୋ ଛାତି ଫାଟିଯିବ—ତମ' କଲିଜା ଫାଟି ହୋଇଯିବ—ଦଶ ଦିଗ
ମତେ ଅନ୍ଧାର ଦିଶିବ ।

ଅଞ୍ଜଳୀ ବୋଉର ଛାତି ଉପରେ ନିଜର ମୁଣ୍ଡ ରଖି ଭାବୁଥିଲା—
କହିଦେବ ତା' ମନ-ଗହ୍ୱରର କଥା । କିନ୍ତୁ ଯେଉଁ ବୋଉ
ମୁଅଠାରୁ ଶତ ଗୁଣରେ ତାକୁ ଶ୍ରଦ୍ଧା କରେ, ସ୍ନେହ ଦିଏ, ତା'ର
ଛାତି ଉପରେ ମୁଣ୍ଡ ରଖି କେମିତି ସେ ଏ କଥା କହିବ ? ବାହାଘର
ପାଇଁ ସେ ଯେତେବେଳେ ଜବାବ୍ ଦେଇ ସାରିଛି, ସେତେବେଳେ
ସେ ଏ କଥା ଶୁଣିଲେ କ'ଣ ଭାବିବ ? ହୁଏତ ମୁଣ୍ଡ ପିଟି ଦେବ ।
ତା' ଉପରେ ଯେଉଁ ସବୁ ଧାରଣା ସେ ନେଇଛି, ଆଜି ହଠାତ୍ ତା'ର
ବଦଳି ଯିବ । ସେ ଘୃଣା କରିବ । ନାକ ଟେକିବ । କାହା ପାଖରେ
ସିନା ନିଜ ଝିଅ କଥା କହିବନି—ହେଲେ ମନ ତଳେ ତା'ର
ଯେଉଁ କଳଙ୍କ ଲାଗିବ, ସେ ଲୁଭିବାର ବା ଧୋଇଯିବାର ନୁହେଁ । ନିଜ

ବୋଉର ଗୋଡତଳେ ମୁହଁ ରଖି ସେ ଏମିତି ଭାବୁଛି । ପୁଣି ଭାବିଲା, ଆଜି ଯଦି ସେ କିଛି ତା' ବୋଉକୁ ନ କହିବ, ତା' ହେଲେ ଚିରଦିନ ପାଇଁ ଦେବଭାଇକୁ ସେ ଭୁଲିଯିବ । ତା'ର ସ୍ମୃତିର ବୋଝକୁ ନେଇ ଜୀବନ ଭର ସେ ତା' ଦେହ ମୁଣ୍ଡକୁ ଖଣ୍ଡିଆ ଖାବୁରା କରିବ । ହାୟ ଭଗବାନ; ମତେ ବୁଦ୍ଧି ଦିଅ, ବାଟ ଦେଖାଅ । ଅଞ୍ଜଳୀର ବୋଉ କାନ୍ଦୁଛି—ଅଞ୍ଜଳୀ ତା'ର ଗୋଡ ତଳେ ମୁହଁ ଥାପି କାନ୍ଦିବାରେ ଲାଗିଛି······ସେତ କଠିନ ହେଇମିତ ସେ ଦିନ ।

ଶେଫାଳୀର ଆଜି ବାହାଘର······

ହଳଦିଆ ଶାଢ଼ୀ ସେ ପିନ୍ଧିଛି । ଘରର ଘରେ ଲୋକ ପୂରିଛନ୍ତି । କେତେ ଝିଅ, ବୋହୂ ତାଙ୍କ ଘରକୁ ଆସିଛନ୍ତି । ଘରେ ବାଜା ପଡୁଛି । ବେଦୀ ବନ୍ଧା ହୋଇଛି । ହୁଳହୁଳି ଆ ପଡୁଛି । ମନ୍ଦିରେ ମନ୍ଦିରେ ଶଙ୍ଖ ବାଜୁଛି । ହୁଳହୁଳି ପଡୁଛି ।

ଶେଫାଳୀ କନିଆଁ ହୋଇଛି ।

ଘରେ ହୋ ହୋ ଗ୍ରେ ଗ୍ରେ ପଡୁଛି । କିନ୍ତୁ ଶେଫାଳୀର ମନ କେଉଁଠି ହେଲେ ଠିକ୍‌ ଏ ଲାଗୁନି । ଯୁଆଡ଼େ ଯାଉଛି ଖିଆଡେ଼ ମଣିଷ—ସିଆଡେ଼ ଉତ୍ସବ । ସାଙ୍ଗ ସାଥି ଝିଅମାନେ ମେଳା ମେଳା ହେଉଛନ୍ତି । ପାଖରେ ତା'ର ବସୁଛନ୍ତି—କେତେ କଥା ଗପୁଛନ୍ତି । ଶେଫାଳୀ ନୀରବ । କାହାରିକୁ କିଛି କହୁନି । ଯିଏ ଯାହା କହୁଛି, ସବୁ ସେ ଶୁଣୁଛି । ବଲ ବଲ କରି ଚାହୁଁଛି ।

ବାହାଘର ଦିନର ସଞ୍ଜ······

ଘରର ଖଟ ଉପରେ ସେ ଶୋଇଛି । ଘରର ବାହାରେ ସମସ୍ତେ ବ୍ୟସ୍ତ—ସମସ୍ତେ ତତ୍ପର । ବର ଆସିବ । ଖଦା ଲାଗିବ ।

ସାହ୍ନ ପଣ୍ଡିତା ନିମନ୍ତ୍ରଣ ହେବେ । ବରଯାତ୍ରୀ ଚର୍ଚ୍ଚା ହେବେ । ଦେବା ନେବା ହେବ । ବରଧର୍ମ ଯିବ ।

ଘର ଖଟ ଉପରେ ଶୋଇ ଶେଫାଳୀ ଭାବୁଛି ତା'ର ବାହାଘର କଥା । କାହାକୁ ସେ ବାହା ହେବ ? ଦେବେନ୍ଦ୍ରକୁ ? କେଉଁ ବଉଳକୁ ସେ ତା ? କ'ଣ କରେ ସେ ? କେଉଁଦିନ ବ ହାଘର ? ଅଜ୍ଞ ! ସେ ଚମକି ପଡ଼ିଲା । ଆଉ କେଇଘଣ୍ଟା ପରେ ଶେଷଣୀ ଜାଳି, ହୋଇ ଫୁଟାଇ, ବାଇଦ ବଜାଇ ବର ଆସିବ । ବେଦୀରେ ବସିବ । ହ ତରେ ହାତ ଛନ୍ଦାଛନ୍ଦ ହେବ । ବାହ୍ମଣ ଶ୍ଳୋକ ପଢିବ । ହୋମ ଘର ହେବ । ବୋହାଘର ସରିଯିବ । ତା' ପରେ ଶରଧନ ପାଇଁ ଘରୁ ବଦା ହେଇ ଚାଲିଯିବାକୁ ହେବ, ଏକ ଅଜଣା ଅଦେଖା ଘରକୁ ; ଦେଉଁଠି ବୋହୂ ହେବାକୁ ହେବ, ସ୍ତ୍ରୀ ହେବ କୁ ପଡ଼ିବ ।

କିଏ ସେ ତା'ର ସ୍ୱାମୀ ହେବେ ? ଦେବେନ୍ଦ୍ର ? ଆଉ ସୁର ଭାଇ ? କାହିଁକି ସୁର ଭାଇ ? ଜାଣି ଜାଣି ତା' ବାହାଘରକୁ ଗାଁ କୁ ସେ ଆସିଲେନି ! କାହିଁକି ଆସିଲେନି ? କାହିଁକି ବା ଆସିଥାନ୍ତେ ? ଯଦି ସେ ଆସିଥାନ୍ତେ ତା'ର ଏଇ କନିଆଁ ରୂପକୁ ଦେଖି ସେ ଡରି ଯାଇଥାନ୍ତେ । ସେ ବେଦୀ ଉପରେ ଆଉ ଜଣକ ପାଖରେ ତାଙ୍କର ଆଖି ଆଗରେ ବସିଥିଲେ ; ସେ କ'ଣ ଠିଆ ହୋଇ ଏ ସବୁ ଦେଖି ପାରନ୍ତେ ? ଭୋଜ ନ ଆସନ୍ତୁ । କିଏ କାହାକୁ ଠକୁଛି ? ସୁର ଭାଇ ତାକୁ ଠକି ନାହାନ୍ତି କି ସେ ବି ତାଙ୍କୁ ଠକିନାହିଁ । ତା' ହେଲେ କିଏ ଦାୟୀ ? କାହିଁକି ଆଜ ବାହାଘର ହୋଇ ପାରିଲା ନାହିଁ ? ସଞ୍ଜବେଳେ, ଛପି ଛପିକା ଜହ୍ନ ତଳେ, ମହାଦେବ ମଣ୍ଡପର କେତେ କଥା, କେତେ ସ୍ୱପ୍ନ ! ସୁରଭାଇ ଆଉ ସେ···ତାଙ୍କର କୋଳରେ ମୁଣ୍ଡ ରଖି ନୀଳ ଆକାଶର ଛାତରେ ପଡ଼ିଥିବା ସେଇ ଅକଳନ ମିଠି ମିଠି ତାରାଗୁଡ଼ିକ ଗଣିବାକୁ କେତେ ଚେଷ୍ଟା କରନ୍ତି । ଗୋଟିଏ

ପଛର ତାରା ଗୁଡ଼ିକୁ ଗୋଟି ଗୋଟି କରି ଗଣି ଆଉ ପଛର ତାରାଗୁଡ଼ିକୁ ଗଣିଲା ବେଳକୁ ତା'ର ସବୁ ଭୁଲ୍ ହୋଇଯାଏ । ସେ ଗଳ୍ପ କରନ୍ତି । ତାଙ୍କର କୋଳରେ ମଥା ରଖି ଶୋଇ ପଡନ୍ତି ।

ଶେଫାଳୀ ପୁଣି ଭାବୁଛି, କିପରି ସେ ସୁରଭାଇଙ୍କୁ ଭୁଲିବ ! ସେ ବା ତାକୁ ଭୁଲିବେ କିପରି ? ମହାଦେବ ସାମନାରେ ଦୁହେଁ ଯେ କି ଶପଥ ନେଇଥିଲେ । କାହିଁ ସେ ଶପଥ ? ସୁରଭାଇ ! ପ୍ରାଣର ସୁର ଭାଇ ! ! ଦେହର ପ୍ରତି ଶିରାରେ ତାଙ୍କର ଦେହର ଲାବଣ୍ୟ ଭରିଛି । ପ୍ରତି ଲୋମକୂପରେ ତାଙ୍କର ଭାଷାର ବାନ୍ଧୁ ମନ୍ତ୍ର ରହିଛି । କିପରି ସେ ତାଙ୍କୁ ଭୁଲିଯିବ ? କିପରି ଭୁଲିଯାଇ ଆଉ ଜଣଙ୍କ ପାଖରେ ଦେହ, ମନକୁ ତା'ର ସଅଁପି ଦେବ ?

ଘରର ପଲଙ୍କର ବାଡରେ ଲଣ୍ଠନ ଜଳୁଛି । ସେ ମିଟି ମିଟି କରି ଉପରକୁ ଚାହିଁ ଭାବୁଛି । ବୋଉ ଆସି ପହଞ୍ଚିଲା । ଦେଖିଲା, ଶେଫାଳୀ ଶୋଇନି । ସେଇମିତ ଚେଇଁଛି । ମିଟି ମିଟି କରି ଉପରକୁ ଚାହୁଁଛି ।

ଶେଫାଳୀ ବୋଉ କହିଲା—ଶୋଇପଡ଼ ମା—ଉପାସ କରିଛୁ; ଶୋଇ ନ ପଡିଲେ ଦେହ ଭାରି ଦୁର୍ବଳ ଲାଗିବ । ଦେହ ହାତ ଗୋଡ଼ ଘୋଳେଇ ହେବ । ମୁଣ୍ଡ ବଥେଇବ । କାନ୍ତି ଉଠେଇବ । ଚେଣ୍ଣୁ ଶୋଇପଡ଼ । ଭାବୁଛୁ କ'ଣ ଏତିକି ବେଳୁ ?

ଶେଫାଳୀ କର ଲେଉଟେଇ ଶୋଇବାକୁ ଆରମ୍ଭ କଲା । ବୋଉ ପୁଣି ତା'ର ଫେରି ଆସିଲା । ନିଜ କାମରେ ବ୍ୟସ୍ତ ରହିଲା ।

ଶେଫାଳୀକୁ ଆଉ ନିଦ ହେଉନି । କେଇ ଘଣ୍ଟା ପରେ ଏଇ ଗାଁ, ଏଇ ଘର ପଛରେ ପଡ଼ି ରହିବ । ପିଲାବେଳର ପୁଚି, ଡ଼ାଳିମାଙ୍କୁଡ଼ି ଆଉ ବୋହୂ ବୋହୂକା ଖେଳ ସବୁ କୁଆଡ଼େ ଲୁଚିଯିବ । ଗାଆଁ ପାଠାଗାରର ସମ୍ପାଦିକା ଆଉ ସେ ହୋଇ ପାରିବନି ! ଗାଆଁର

ଉଦ୍‌ଯାପନ କାଳରେ ଆଉ ସେ ଅଂଶ ଗ୍ରହଣ କରି ପାରିବେନି । ନାସ୍ତି ମଙ୍ଗଳ ସ୍ଥିତି ପାଇଁ ଦିନ ରାତି ଆଉ ସେ ଚିନ୍ତା କରିବ ନାହିଁ—ଦାଣ୍ଡପୋଖରୀ, କାଣି ନଈ ସବୁ ସେ ଭୁଲିଯିବ । ବାପା ବୋଉଙ୍କୁ ବି ଭୁଲିଯିବ । ଆଉ ନ ଭୁଲିବ କାହାକୁ ? ଏମାନେ ପାଶୋରା ମନର ନଈରେ ଡୁବିଯିବେ, ହଜିଯିବେ । କିନ୍ତୁ ସୁର ଭାଇଙ୍କୁ କ'ଣ ଭୁଲି ହେବ ? ଆଃ ! ହେଇଯାଆନ୍ତା କି ସେ ଏକ ପକ୍ଷୀରାଜ-ଘୋଡ଼ା । ସେ ଆସ୍ତେ ଆସ୍ତେ ଏଇ ମଥାନ କଣା କରି ଉଡ଼ିଯାଆନ୍ତା ଆକାଶର ମେଘ ପର୍ଯ୍ୟନ୍ତ । ସେଇଠୁ ସୁ ସୁ ହୋଇ ଆକାଶର ତୀରେ ତୀରେ ସେ ଛୁଟି ଚାଲନ୍ତା··· ଛୁଟି ଚାଲନ୍ତା ସୁର ଭାଇ ପାଖକୁ । ତାଙ୍କ ପାଖରେ ପହଞ୍ଚି ଯାଇ କହନ୍ତା—"ସୁରଭାଇ, ଆସ, ମୋ'ର ପିଠି ଉପରେ ବସ । ଆମେ ଆକାଶର ତୀରେ ତୀରେ ଉଡ଼ି ଉଡ଼ି ଚାଲି ଯିବା—"

ଏଇମିତି ସେ ଭାବୁଛି—ରାତି ଆସି ପାହିବା ଉପରେ । ପେଁ କରି ବାଜି ଉଠିଲା ଠେଲଙ୍ଗି ବାଇଦ । ଧଡ଼ ଧାଡ଼ ହୋଇ ସବୁ ଉଠିଲେ, ବୋଷଣୀ ପଡିଆକୁ ଧାଇଁଲେ । ଢୋଲ ଟମ୍ଫି ଉଠିଲା—ମହୁରୀ ବାଜିଲା । ଗଛ, ହୋଇ ଓ ଶଙ୍ଖ ରହି ରହି ବାଜିଲା—ଗାଁ ଉଚ୍ଛୁଳିଲା ।

ଶେଫାଳୀ ଉଠି ବସିଲା । ରାତି ସାରା ସେ ଶୋଇନି । ତା'ର ଭିତରେ ତା'ର ବୋଷଣୀର ବାଇଦ ବାଜିଉଠିଲା । କାନ ତା'ର ଥକ୍କା ହୋଇଗଲା—ଅନ୍ଧାର କଟି କଟି ସକାଳ ହେଲା । ସେ ସେଇମିତି ବସିଛି ।

ଘର ଭିତରକୁ ପଶି ଆସିଲା ତାଙ୍କର ଘର ପାଖର ଶଶୀ—ବୟସ ଏଗାର ବାର ଭିତରେ—ଲେଖାରେ ଭଉଣୀ ହେବ ତା'ର—ପଲଙ୍କ ଉପରକୁ ଉଠିଯାଇ କହିଲା—ଶେଫିଦେଈ ; ତୋ

ବରଷି ଭାର ଗୋଟା ଲୋ ! ସୁନ୍ଦର ଚେହେରା । ଉପରକୁ ବାଳ ଘୁଞ୍ଚିଛି । ଆଉ ଦିନକ ପରେ ତୁ ଦେଖିବୁନି କି ?

ଶେଫାଳୀ ଶୁଣିଲା । ଶଶୀର କଥା ବୁଝି ପାରିଲା । ଶଶୀ କୁଆଡୁ ଜାଣିବ ତା'ର ମନ ଗହନର ଗୋପନ କଥା । ହେଲେ ତାକୁ କିଛି ଉତ୍ତର ଦେଲାନି । ଶଶୀ ପଳାଇଗଲା ପୁଣି ସେଇଁ ଚୋଷଣୀ ପଡିଆ ଆଡେ ।

ଶେଫାଳୀ ଭାବୁଛି, ସତରେ କ'ଣ ଆଜି ତା'ର ବାହାଘର ! ବର୍ଷା ରାତରେ, ପାତଳ ଜହ୍ନରେ, ଘୁପିଘୁପିକା ଜହ୍ନ ରାତରେ ବେଳେ ବେଳେ ମନ କାହିଁକି ତା'ର ଅନମନା ହୋଇ ଉଠେ ? ବର୍ଷା ହେଲେ, ଦେହ ମୁଣ୍ଡରେ ତା'ର ଶୀତଳ ପବନ ପରଶି ଯାଏ । ସେଇ ପବନରେ ଦେହେ ଦେହେ ତା'ର ଖେଳିବୁଲେ, ଏବଂ ଶିହରଣ । କାହିଁକି ସେଇମିତି ହୁଏ ? ସେଇ ଶୀତରେ ମନ ଭିତରେ ରହି ରହି କିଏ ତା'ର ରଙ୍ଗ କୁହାଟେ ମାରେ—ସେଇ ରଙ୍ଗ କୁହାଟେ କାହାର ? କେମିତି ସେ ଯାଇ ଦିନ କାଟିବ ? ଏ ଦେହ ଓ ମନକୁ ସୁର ଭାଇକୁ ଦାନ କୁଣ୍ଡାରେ ସେ ତ ଦେଇଛି । ପୁଣି ସେଇ ଦେହ ଓ ମନକୁ ତା'ର ବର କିପରି ପୁଣି ଥରେ ଗ୍ରହଣ କରିବେ ? ସେ କ'ଣ ସୁର ଭାଇର ଉଚ୍ଛିଷ୍ଟ ଖାଇବେ ? ତା'ର ଉଚ୍ଛିଷ୍ଟ ମନ ଓ ଦେହକୁ ସେ ଉପଭୋଗ କରୁଥିଲା ବେଳେ, ସେ କ'ଣ ଜାଣି ପାରିବେନି ? ହଁ, ଜାଣିବେ; ସେ ତ ଜାଣିବେ ନିଶ୍ଚୟ । କିନ୍ତୁ ଜାଣି ଜାଣି କିପରି ସେ ତାଙ୍କୁ ଅଇଁଠା କୁଣ୍ଡା ଖାଇବାକୁ ଦେବ ? ନାଁ, ଏ ଦେହ ତା'ର କଳୁଷିତ ହୋଇଛି । ମନ ତା'ର ଅପବିତ୍ର ହୋଇଛି । ଦେହରେ ଓ ମନରେ ସୁର ଭାଇ ଏକଚ୍ଛତ୍ରପତି ହୋଇଛନ୍ତି । ତେଣୁ ସ୍ୱାମୀ ପୁଣି କିପରି ଏକ କରଦ ରଜା ହୋଇ ରହିବେ । ନାଁ, ନାଁ, ସେ ହେବନି । ସେ ମରିଯାଆନ୍ତା କି—ଡିଆ ମରଣ ତା'ର ଘଟନ୍ତା କି—

କ'ଣ ସେ କରିବ ଭାବି କିଛି ଠିକ୍ କରି ପାରୁନି । ବିବାହ ବାଦ୍ୟ ଖୁବ୍ ଜୋରରେ ବାଜି ଉଠିଲା । ସ୍ୱୀକାର କଲା ବୋଧେ । ଦେଇ ବର ଆସିଗଲାଣି—ତେଣିକି ବାଇଦ କର୍ମ ଉଠିଲାଣି । ଅଜ ଝିଅଏ—ଶେଫାଳୀ ଘରର ଝରକା ଖୋଲି ଚାହିଁଲା ବାହାରକୁ—ସକାଳର ପାଉଁଶିଆ ଅନ୍ଧାର ଭିତରେ ଜଳୁଛି କେତେ ପେଟ୍ରୋମାକ୍ସ ଲାଇଟ୍—ବରର ଶୋଭାଯାତ୍ରାରେ କେତେ କୃତ୍ରିମ ଫୁଲ ସଜା ହୋଇଛି । ବରଯାତ୍ରୀ କେତେ ରଙ୍ଗର, କେତେ ଢଙ୍ଗର ଲୁଗା ପିନ୍ଧିଛନ୍ତି—ଜାମା ଘୋଡ଼ିଛନ୍ତି—କିଏ ସାଇକେଲ ପେଲି ପେଲି ଆଣୁଛି ତ କିଏ ସବାରିରେ ଚଢ଼ିଛି । ଶେଫାଳୀ ଅଦ୍ଭୁର ଝିଅଏ ନିରୀକ୍ଷଣ କରି ଦେଖିଲା, ତା'ର ଗାଆଁର ଲୋକେ ଅସମ୍ଭବ ଭାବରେ ଭିଡ଼ ଜମେଇଲେଣି—ଥାଟେଏବି ଭାଙ୍ଗିଲେଣି । ଲୋକ ଚାହିଁଛନ୍ତି—ସେ ଅଦ୍ଭୁର ଝିଟି ଝରକାଟାକୁ ମୁକୁଳା କରି ଦେଇ ଚାହିଁଲା—ଦେଖିଲା ଚଉତଳରେ ବର ବସିଛନ୍ତି—ଶାନ୍ତିପୁରୀ ଧୋତିର ପାଣ୍ଡୀ ଚକ୍ ଚକ୍ ମାରୁଛି । ସିଲ୍କ ପଞ୍ଜାବୀ ବାରି ହୋଇ ଯାଉଛି । ବର ଚନ୍ଦନଫୋଟା ଘେନିଛନ୍ତି । ଶଶୀ ଆଲୁଅରେ ଖୁବ୍ ଗୋରା ତା'ର ବର । ଦେଖିବାକୁ ମଧ୍ୟ ସୁନ୍ଦର ।

ଶେଫାଳୀ ଅଦ୍ଭୁର ଝିଅଏ ତା'ର ବରକୁ ନିରୀକ୍ଷଣ କରି ଚାହିଁଲା । ଭାବିଲା, ସୁର ଭାଇ ତ ଠିକ୍ ଏଇମିତି । ଏଇମିତି ସେ ଗୋରା ଏଇମିତି ବାଳ ଭାଙ୍ଗନ୍ତି । ଏଇମିତି ଚାହାଁନ୍ତି । ସୁର ଭାଇ କାଇଁ ଆଜି ! ବର ବେଶରେ ସୁର ଭାଇ ସତରେ କ'ଣ ଆସିଛନ୍ତି ? ସତରେ କ'ଣ ଆସିଛନ୍ତି ତାକୁ ବିବାହ କରିବା ପାଇଁ ? ବୋହୂ କରି ଘରକୁ ନେବାପାଇଁ ? ନା, ମିଛ । ସବୁ ମିଛ । କିନ୍ତୁ ସେଇ ବରଙ୍କର ମୁହଁ ଭିତରେ ସିଏ ସୁର ଭାଇ ମୁହଁର ପ୍ରତିଫଳନ କାହିଁକି ଦେଖୁଛି ? ଏବଂ ବରଙ୍କର ଆଖିର ଡୋଳାରେ ସେ କାହିଁକି ସୁରଭାଇର ଆଖିର

ଚେଙ୍ଗଲାଙ୍କୁ ଦେଖି ପାରୁଛି ? ନାଁ, ସେ ଆଉ କିଛି ଭାବିବନି । ମୁଣ୍ଡ ଭିତରେ ଆଉ କୌଣସି ଭାବନା ସେ ପୁରାଇବନି । ତୁମୀ ହୋଇ ହବୁ ଯେ ସହୁଥିବ । ସଖି କଣ୍ଠେଇ ପଛ ସବୁ ଶେଷ କରୁଥିବ । ତାହାଙ୍କରୁ ସେ କିଛି କହିବନି । ଏତିକି ଭାବି ଝଡାସ୍ କରି ଝରକା କବାଟଟା ବନ୍ଦ କରି ଦେଇ ପୁଣି ସେ ଶୋଇ ପଡ଼ିଲା ସେଇ ପଲଙ୍କ ଉପରେ ।

ବର ଆସି ତାଙ୍କ ଦାଣ୍ଡ ଦୁଆରେ ପହଞ୍ଚିଲା······ପିଲା, ବୁଢ଼ୀ ଓ ମାଇପେ ଘରର ଘରେ ହୋଇଗଲେ । ତାଙ୍କର ଚଉପାଢ଼ୀରେ ବରଯାତ୍ରୀ ମାନେ ବସିଲେ । ଟିକା ହେଲେ ।

ଶେଫାଳୀ ଗାଧୋଇଲା—ସରବତ ପିଇଲା । ପିଉସୀ ତା'ର ସବୁ କାମ ସାରି ଦେଲା ।

ଶେଫାଳୀ ବେଦୀ ଉପରେ ବସିଛି । ତା'ର ମୁହଁ ଉପରେ ଉତ୍ତରୀଟିଏ ପଡିଛି । ବେଦୀ ଚାରିପଟେ ବହୁ ଲୋକ ଜମିଛନ୍ତି—ବ୍ରାହ୍ମଣ ମନ୍ତ୍ର ପଢୁଛନ୍ତି—ଶ୍ଲୋକ ଗାଉଛନ୍ତି—ତା'ର ଡାହାଣ ପଟେକୁ ବସିଛନ୍ତି ଆଉ ଜଣେ କିଏ ! ସେ ବର—ସେ ତା'ର ସ୍ୱାମୀ !

ପ୍ରଥମେ ଯେତେବେଳେ ତା'ର ହାତ ଦେବେନ୍ଦ୍ର ହାତରେ ଛନ୍ଦ ହୋଇଗଲା, ଶେଫାଳୀର ଦେହେ ଦେହେ ବହିଗଲା ବୁଝୁଥିବା ଏକ ଝଡ଼, ଏକ ବତାସ । ସେ ଝଡ଼ ଆଉ ବତାସର ଅଭ୍ୟାଗୁରରେ ଦେହ ତା'ର ଥରିଲା—ମୁଣ୍ଡ ଝିମି ଝିମି ହୋଇ ଉଠିଲା--ଏକ ଅଦେଖା ହାତର ନୂଆ ପରଶରେ ସେ ସତେ ଯେମିତି ନିଜକୁ ଭୁଲିଗଲା । ସେଇ ହାତରେ ତା' ହାତ ଥିଲା ବେଳେ ସୁରଭ୍ରାଇର ସ୍ମୃତି ମନର ଅତଳ ଦରିଆରେ ତା'ର ଲୀନ ହୋଇ ଯାଉଥିଲା ।

ବେଦୀ ଉପରେ ବାହାଘର ସରିଗଲା······

ବର ବିଦା ହେବାକୁ ଆଉର ଘଣ୍ଟାଟିଏ ଅଛି—ଚଉପାଢ଼ୀରେ ଯାଆମି ଯୌତୁକ ଦେଖା ନେବା ଚାଲିଛି ।

